କୋଶଳର ଭବିଷ୍ୟତ

# ବିଷୟ ସୂଚୀ





## ଭୂମିକା —

ଏହି ପୁସ୍ତିକା କୋଶଳର ସ୍ୱାଧୀନ-ଚେତା ବନ୍ଧୁମଣ୍ଡଳୀଙ୍କ ପାଇଁ ଲିଖିତ। ପୁସ୍ତିକାନ୍ତର୍ଗତ ସିଦ୍ଧାନ୍ତ ଓ ପ୍ରସ୍ତାବ-ଗୁଡ଼ିକ ସେମାନଙ୍କ ମନକୁ ପାଇଲେ ଏ ବିଷୟରେ ନେତୃତ୍ୱ ଗ୍ରହଣ କରି ବିଚ୍ଛିନ୍ନ କୋଶଳର ଏକତ୍ରୀକରଣ ପାଇଁ ସଂଘବଦ୍ଧଭାବରେ ପ୍ରସ୍ତୁତ ହେବାର ଭାର ସେହିମାନଙ୍କ ହାତରେ। ଏହି ପୁସ୍ତିକା କିମ୍ବା ଏତତ୍-ସଂଲଗ୍ନ ମାନଚିତ୍ର ଅଥବା ଯୋଜନା ପାଇଁ ଲେଖକ କୌଣସି ସ୍ୱତ୍ୱ ଦାବୀ କରନ୍ତି ନାହିଁ। ଯେ କୌଣସି ବ୍ୟକ୍ତି ନିଜ ଇଚ୍ଛାଅନୁସାରେ ଏହି ପୁସ୍ତିକାର ପୁନର୍ମୁଦ୍ରଣ, ଭାଷାନ୍ତର ବା ପତ୍ର ପତ୍ରିକାରେ ପ୍ରକାଶ ଅଥବା ଅନ୍ୟ ଯେ କୌଣସି ପ୍ରକାରେ ବ୍ୟବହାର କରି ପାରିବେ।

"କୋଶଲୀ"

# କୋଶଳର ଭବିଷ୍ୟତ ।





## ଉପକ୍ରମଣିକା

• ଐତିହାସିକ ପଟଭୂମି —

### ଅବସ୍ଥିତି ଓ ଆୟତନ:—

ପ୍ରାଚୀନ, ମଧ୍ୟ ଓ ଆଧୁନିକ ଯୁଗର ଇତିହାସରେ କୋଶଳ ନାମରେ ଖ୍ୟାତ ଦକ୍ଷିଣ କୋଶଳ ମହାନଦୀ ଓ ତାହାର ଉପନଦୀ ତେଲ, ଯୋଙ୍କ, ଅଙ୍ଗ, ଇବ ଓ ବ୍ରାହ୍ମଣୀର ଉପରଭାଗରେ ଓ ମଧ୍ୟଭାଗରେ ଥିବା ଉପତ୍ୟକା-ମାନଙ୍କରେ ଅବସ୍ଥିତ ଅଞ୍ଚଳମାତ୍ର । ଏହି ଭୂଖଣ୍ଡର ଆୟତନ ୪୦,୦୦୦ ବର୍ଗ ମାଇଲରୁ ଅଧିକ ଓ ଏହାର ବର୍ତ୍ତମାନ ଲୋକସଂଖ୍ୟା ପ୍ରାୟ ୪୮ ଲକ୍ଷ । ଅଧୁନା ପୂର୍ବ ଗଡ଼ଜାତ ମହାଲର ଅନ୍ତର୍ଭୁକ୍ତ ବସ୍ତର, କଳାହାଣ୍ଡି, ପାଟଣା, ରାଏଗଡ଼, ଶକ୍ତି, ସାରଙ୍ଗଗଡ଼, ଆଠମଲ୍ଲିକ, ବଉଦ, ବାମଣ୍ଡା, ରେଢ଼ାଖୋଲ, ସୋନପୁର ବଣାଇ ଓ ଗାଙ୍ଗପୁର ପ୍ରଭୃତି ଦେଶୀୟ ରାଜ୍ୟ; ଓଡ଼ିଶା ପ୍ରଦେଶାନ୍ତର୍ଗତ [illegible] ଓ ଖଡ଼ିଆଲ ସହିତ ମିଳିତ ସମ୍ବଲପୁର ଜିଲ୍ଲା ତଥା କନ୍ଧମାଳ; ଏବଂ ମଧ୍ୟପ୍ରଦେଶାନ୍ତର୍ଗତ ଫୁଲଝର, ଦେଓଲୀ ଓ [illegible] — ଏହି ଭୂଖଣ୍ଡଗୁଡ଼ିକୁ ନେଇ କୋଶଳ ରାଜ୍ୟ ଗଠିତ ହୋଇଥିଲା ।

### କର୍ମ୍ମିଗତ ସମତା :—

ଅନ୍ୟାନ୍ୟ ଦେଶମାନଙ୍କର ଇତିହାସ ପରି କୋଶଳ ଇତିହାସରେ ମଧ୍ୟ ବୈଦିକ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ କେନ୍ଦ୍ରାଭିମୁଖିନୀ ଓ କେନ୍ଦ୍ରାପସାରିଣୀ ଶକ୍ତି ଓ ପ୍ରବୃତ୍ତିର ସଂଘର୍ଷ ପରିଲକ୍ଷିତ ହୁଏ । ଏହି ସଂଘର୍ଷ ଫଳରେ ପ୍ରବଳ ପ୍ରତାପଶାଳୀ ରାଜାମାନଙ୍କ ଅଧୀନରେ କେନ୍ଦ୍ରୀଭୂତ ଶକ୍ତିସମ୍ପନ୍ନ ବୃହତ୍ତର କୋଶଳ ସାମ୍ରାଜ୍ୟ ଗଠିତ ହୋଇ ପରବର୍ତ୍ତୀ କାଳରେ

ତାହା କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ ହୋଇ ଆସିଛି । କିନ୍ତୁ ତାହାର କୃଷ୍ଟିଗତ ଏକତା କେବେହେଁ ବାଧାପ୍ରାପ୍ତ ହୋଇ ନାହିଁ । ବୈଦିକ, ପୌରାଣିକ ଓ ହିନ୍ଦୁ-ଯୁଗ; ଗୌରବାନ୍ୱିତ ସୋମବଂଶୀ, ଐର ଓ କୋଶଳ ଗୁପ୍ତ ରାଜତ୍ୱ କାଳ, ଅଥବା ମୋଗଲ ଓ ମରହଟ୍ଟା ଯୁଗ, ଯେଉଁ ସମୟରେ କ ଚୌହାନମାନେ ପ୍ରବଳ-କ୍ଷମତାପନ୍ନ ଥିଲେ — ଏହିସବୁ ଯୁଗାବଧି କୋଶଳର କୃଷ୍ଟି ଓ ସଂସ୍କୃତିଗତ ସାମଞ୍ଜସ୍ୟ ଅକ୍ଷୁଣ୍ଣ ରହି ଆସିଅଛି ।

## ଭାଷା :—

ଏହି ଅଞ୍ଚଳର ଭାଷା ଉତ୍ତର ଦିଗରୁ ଛୋଟ ନାଗପୁରୀ ହିନ୍ଦୀ, ପଶ୍ଚିମରୁ ଛତିଶଗଡ଼ୀ ହିନ୍ଦୀ ବା ଲରିଆ ଓ ଦକ୍ଷିଣ ଦିଗରୁ ଆନ୍ଧ୍ର ଦେଶର ତେଲୁଗୁ ଦ୍ୱାରା ପ୍ରଭାବିତ ହୋଇଅଛି । ତେଣୁ ଏହି ଅଞ୍ଚଳର ଭାଷା ଓଡ଼ିଆ ହେଲେ-ମଧ୍ୟ ଏହାର ନିଜର ଗୋଟାଏ ବୈଶିଷ୍ଟ୍ୟ ରହିଅଛି । କୋଶଳର ଆଧୁନିକ ଭାଷା 'ସମ୍ବଲପୁରୀ ଓଡ଼ିଆ' ନାମରେ ବିଶେଷ ଭାବରେ ପରିଚିତ । କଳିଙ୍ଗ, [ଗଞ୍ଜାମ] ଉତ୍କଳ, ସିଂହଭୂମି, ଓ ଭଞ୍ଜଭୂମି — ଏହି ଚାରିଗୋଟି ପ୍ରଧାନ ଓଡ଼ିଆ କୃଷ୍ଟିଗତ ଉପବିଭାଗର ଭାଷାଠାରୁ ଏହା ପୃଥକ୍ । କୋଶଳବାସୀଙ୍କର ଗୋଟାଏ ସାଧାରଣ ବଶିଷ୍ଟ ସଂସ୍କୃତି, ପାରଂପରିକତା, ବିଶ୍ୱାସ, ଜୀବନ ପ୍ରଣାଳୀ ଓ ଦୃଷ୍ଟିଭଙ୍ଗୀ ରହି ଅଛି ଏବଂ ତାହାହିଁ ଏହି ଅଞ୍ଚଳବାସୀଙ୍କୁ ଏକତା-ସୂତ୍ରରେ ଆବଦ୍ଧ କରି ଏହାର ସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତିତ୍ୱ ବଜାୟ ରଖିଅଛି ।

## ଓଡ଼ିଆ କୃଷ୍ଟିଗତ ଉପବିଭାଗମାନଙ୍କ ମଧ୍ୟରେ ନେତୃତ୍ୱ:—

ସୁବୃହତ୍ ଆୟତନ ଓ ଲୋକସଂଖ୍ୟା ଯୋଗୁଁ କୋଶଳ ଓଡ଼ିଆ-କୃଷ୍ଟିଗତ ବିଭାଗମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଓ ଅଗ୍ରଗଣ୍ୟ; ଏତଦ୍ଭିନ୍ନ ମଧ୍ୟ ଭୌଗୋଳିକ ଅବସ୍ଥାନ ଓ ଐତିହାସିକ ପ୍ରାଧାନ୍ୟ ଦୃଷ୍ଟିରୁ କୋଶଳ ବ୍ରିଟିଶ ଜାତିର ଆଗମନ ପର୍ଯ୍ୟନ୍ତ ଓଡ଼ିଆ ଜାତିର ରାଜନୈତିକ ନେତୃତ୍ୱ ସର୍ବଦା ଗ୍ରହଣ କରିଥିଲା । ଐର ଓ କୋଶଳଗୁପ୍ତ ବଂଶୀୟ ଶାସକମାନଙ୍କ ଅତି [illegible] ଅଳ୍ପକାଳସ୍ଥାୟୀ ରାଜତ୍ୱକାଳ ବାଦ୍ ଦେଲେ ସମଗ୍ର ଓଡ଼ିଶା କେବେହେଁ ସଂଗଠିତ ହୋଇ ପାରି ନ ଥିଲା, ଏପରିକି କଳିଙ୍ଗ ସାମ୍ରାଜ୍ୟର ଏବଂ ଓଡ଼ିଶାର ଗଙ୍ଗ ଓ ସୂର୍ଯ୍ୟ ବଂଶୀୟ ନରପତିମାନଙ୍କର ଗୌରବମୟ ଯୁଗରେ ମଧ୍ୟ ସିଂହଭୂମି, ଭଞ୍ଜଭୂମି, କଳିଙ୍ଗ କିମ୍ବା କୋଶଳର ଅଂଶ ବିଶେଷ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଓଡ଼ିଆ ସାମ୍ରାଜ୍ୟର ବାହାରେ ରହିଥିଲା ।

କିନ୍ତୁ କୋଶଳର ମଧ୍ୟଦେଇ ପଥରେ ହିଁ ଅର୍ଦ୍ଧସଭ୍ୟ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳକୁ ପ୍ରବେଶ କରି ପାରିଅଛନ୍ତି ।

## ବିକାଶ-ଧାରାର ଗତିରୋଧ :—

ବୈଦେଶିକ ସଭ୍ୟତା ଓ ସଂସ୍କୃତିର ସଂଘର୍ଷ ଫଳରେ ଭାରତର ସ୍ୱାଭାବିକ ବିକାଶ ଧାରା ବ୍ୟାହତ ହୋଇଅଛି । ଅପେକ୍ଷାକୃତ ଅଧିକ କ୍ଷମତାଶାଳୀ ଶକ୍ତିର ପ୍ରଭାବରେ ଏହାର କେନ୍ଦ୍ରାଭିମୁଖିନୀ ଓ କେନ୍ଦ୍ରାପସାରିଣୀ ଗତିଧାରା ଅସ୍ୱାଭାବିକ ଭାବରେ ବାଧାପ୍ରାପ୍ତ ହୋଇଅଛି । କିନ୍ତୁ ବିଭିନ୍ନ ଅଞ୍ଚଳର ଏହି ସ୍ୱାଭାବିକ ଗତି-ଧାରାର ପଥରୁଦ୍ଧ କରିବାଦ୍ୱାରା ଏବଂ କୃଷ୍ଟିଗତ ଐକ୍ୟସମ୍ପନ୍ନ ଅଂଶମାନଙ୍କୁ ଭିନ୍ନ ଭିନ୍ନ ବିଭାଗ ଓ ଉପବିଭାଗ-ମାନଙ୍କରେ ପରିଣତ କରିବାଦ୍ୱାରା ଆପାତତଃ ଭାରତର ଏକତା ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ବିଜ୍ଞାନସମ୍ମତ କାରଣରୁ ନ ହୋଇ ଶାସନଗତ ସୁବିଧା ଓ ସାମ୍ରାଜ୍ୟବାଦ ନୀତି ଅନୁସାରେ ହୋଇଥିବାରୁ ତାହା ବିବାଦ ଓ ଦୁଃଖ-କଷ୍ଟର ବୀଜ ବପନ କରିଅଛି ମାତ୍ର । ଏକ ପକ୍ଷରେ ବିଭିନ୍ନ ଅଞ୍ଚଳର ବିଭାଗ ଓ ଉପବିଭାଗମାନଙ୍କରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ଓ ଏକଦେଶଦର୍ଶିତାର ପ୍ରବୃତ୍ତି ଓ ପକ୍ଷାନ୍ତରେ ପ୍ରଗତି ପଥର ଆବଶ୍ୟକତା ଜନିତ ଏକତ୍ରୀକରଣର ପ୍ରଚେଷ୍ଟା ପୂର୍ଣ୍ଣଭାବରେ ବିକାଶ ଲାଭ କରିବାର ପ୍ରଶସ୍ତ କ୍ଷେତ୍ର ପାଇ ପାରିନାହିଁ । ଫଳତଃ ବିଭିନ୍ନ ଅଞ୍ଚଳମାନ ନିଜ ନିଜ ଶକ୍ତି ଓ ସାମର୍ଥ୍ୟ ଅନୁସାରେ ବିକାଶ ଲାଭ କରିବାର ସୁବିଧା ନ ପାଇ ଅସ୍ୱାଭାବିକ ଅବସ୍ଥାରେ ବୃଦ୍ଧିଲାଭ କରିଥିବାରୁ ବହୁ ଅମଙ୍ଗଳର ସୃଷ୍ଟି ହୋଇଅଛି ।

## ଅସ୍ୱାଭାବିକ ବୃଦ୍ଧିର ଅସୁବିଧା :—

ଯାହା ଅସ୍ୱାଭାବିକ ଓ କୃତ୍ରିମ ତାହା ସ୍ଥାୟୀ ଓ ମଙ୍ଗଳପ୍ରଦ ହୋଇ ନ ପାରେ । ମୋଗଲ୍ ସାମ୍ରାଜ୍ୟର ପତନ ସମୟରେ ଯେତେବେଳେ ପରସ୍ପର ବିରୋଧୀ ରାଜା ବା ଶାସକଗଣ ଆଧିପତ୍ୟ ବିସ୍ତାର କରିବା ସଙ୍କାଶେ ସର୍ବଦା ଯୁଦ୍ଧବ୍ୟାପୃତ ଥିଲେ ସେତେବେଳେ କୌଣସି ବାହ୍ୟ ଶକ୍ତି ଭାରତର ଆଭ୍ୟନ୍ତରୀଣ ଅବସ୍ଥାରେ ହସ୍ତକ୍ଷେପ କରି ନ ଥିଲେ, ସେମାନେ ନିଜ ନିଜ ମଧ୍ୟରେ କ୍ରମାଗତ ଯୁଦ୍ଧ ଫଳରେ ଦୁର୍ବଳ ହୋଇ ସେମାନଙ୍କ ଶକ୍ତି ଓ ସାମର୍ଥ୍ୟ ହରାଇ ଥାନ୍ତେ ଏବଂ ଏହି ଗୃହ ବିବାଦ ହେତୁରୁ ଯେଉଁ ବିଶୃଙ୍ଖଳାର ସୃଷ୍ଟି ହୋଇଥାନ୍ତା ତହିଁରୁ ସମୟ-

କ୍ରମେ ଯଥାଯଥ ସୀମା-ବିଶିଷ୍ଟ, ସମକୃଷ୍ଟିଗତ ସ୍ୱାଧୀନ ରାଜ୍ୟମାନଙ୍କର ଉଦ୍ଭବ ଘଟି-ଥାନ୍ତା । ସ୍ୱତନ୍ତ୍ର ଭାବରେ ରହି ସ୍ୱାଧୀନ ହେବା ପ୍ରବୃତ୍ତି ସେ ଗୁଡ଼ିକୁ ଅନେକ ଦିନ ପର୍ଯ୍ୟନ୍ତ ଯେ ପୃଥକ୍ କରି ରଖି ଥାନ୍ତା ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେହି କାରଣରୁ ମଧ୍ୟ ପ୍ରତ୍ୟେକ ସ୍ୱାଧୀନ ଭୂଖଣ୍ଡର ସ୍ୱାୟତ୍ତଶାସନାଧିକାର, ପ୍ରାଦେଶିକ ସ୍ୱାତନ୍ତ୍ର୍ୟ, କୃଷ୍ଟିଗତ ଏକତା ଓ ସ୍ଥାନୀୟ ଦେଶପ୍ରୀତି ଅକ୍ଷୁଣ୍ଣ ରହିଥାନ୍ତା । ସମୂହ ବିକାଶର ପ୍ରୟୋଜନୀୟତା ଓ ଆଧୁନିକ ଜୀବନର ଜଟିଳତା ସ୍ୱାଭାବିକ ପ୍ରକ୍ରିୟାରେ ସହଯୋଗର ପ୍ରବୃତ୍ତି ଜାଗରିତ କରିଥାନ୍ତା ଓ କେନ୍ଦ୍ରାଭିମୁଖିନୀ ଶକ୍ତି ଭାରତର ଏକତା ପୁନର୍ବାର ସ୍ଥାପନ କରିଥାନ୍ତା । କିନ୍ତୁ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ତା' ସଙ୍ଗେ ସଙ୍ଗେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟର ଅଭାବ ପୂରଣ ପାଇଁ ପ୍ରତ୍ୟେକ ସ୍ଥାନୀୟ ସମାଜ ହସ୍ତରେ ଯଥେଷ୍ଟ ପରିମାଣରେ ସ୍ୱାୟତ୍ତଶାସନାଧିକାର ରହିଥାନ୍ତା । ସମାଜର ନିମ୍ନସ୍ତରରୁ ଏହି ପ୍ରକ୍ରିୟାର ଭିତ୍ତି ଗଢ଼ି ଥିବାରୁ ତାହା ସ୍ୱାଭାବିକ ଓ ସ୍ଥାୟୀ ହୋଇ ଥାନ୍ତା । ଅନ୍ତର ମଧ୍ୟ ଏହା ବିଭିନ୍ନ ଅଞ୍ଚଳର କୃଷ୍ଟିଗତ ଏକତା ରକ୍ଷା କରି ପାରି ଥାନ୍ତା । ଅଧୁନା ବହୁ କ୍ଷେତ୍ରରେ ବୃଦ୍ଧି ଓ ବିକାଶ ନିତାନ୍ତ ଅସ୍ୱାଭାବିକ ଓ ଅସଙ୍ଗତ ହୋଇ ପଡ଼ିଅଛି । ସମକୃଷ୍ଟି-ସୂତ୍ରରେ ଆବଦ୍ଧ ଏକ ଜାତୀୟ ବହୁ ଅଞ୍ଚଳକୁ କୃତ୍ରିମ ପ୍ରଣାଳୀରେ ଖଣ୍ଡ ବିଖଣ୍ଡ କରିଦିଆଯାଇଅଛି ଓ ସ୍ୱାଭାବିକ ଗତିର ପଥରୁ ବଳ-ପୂର୍ବକ ଚ୍ୟୁତ କରାଯାଇଅଛି । ଭାଷା, ସାହିତ୍ୟ, ଇତିହାସ ଓ ପାରମ୍ପରିକତାରେ ଏକତାସମ୍ପନ୍ନ ଏକ ଶ୍ରେଣୀର ଲୋକଙ୍କୁ ନିର୍ଦ୍ଦୟ ଭାବରେ ନିଜ ଜାତି ବନ୍ଧୁମାନଙ୍କଠାରୁ ପୃଥକ୍ କରିଦିଆଯାଇଛି । ଏହି ଦିଗରେ କୋଶଳର କ୍ଷତି ସର୍ବାପେକ୍ଷା ଅଧିକ ।

## ଏହି ପୁସ୍ତିକାର ଉଦ୍ଦେଶ୍ୟ :—

ସମକୃଷ୍ଟି ବିଶିଷ୍ଟ ଖଣ୍ଡ ଓ ଉପଖଣ୍ଡମାନଙ୍କୁ ଛିନ୍ନ ବିଚ୍ଛିନ୍ନ କରିବାଦ୍ୱାରା ସେମାନଙ୍କ ପ୍ରତି ଯେଉଁ ଅନ୍ୟାୟ ଓ ନିର୍ଦ୍ଦୟ ବ୍ୟବହାର କରାଯାଇଅଛି ଓ କୃତ୍ରିମ ଭାବରେ ସୃଷ୍ଟି ବିଚ୍ଛେଦ ହେତୁ ଅସୁବିଧା ଘଟିଅଛି ତାହା ଆଜିକାଲି ସମସ୍ତେ ହୃଦୟଙ୍ଗମ କରି ପାରୁଛନ୍ତି । ଭାରତର ଶାସନ ସଂକ୍ରାନ୍ତ ନିଷ୍ପତ୍ତି ସମୟରେ ବିଭିନ୍ନ ଅଞ୍ଚଳର ସୀମାବଣ୍ଟନର ପୁନର୍ବିଚାର ଯେ ହେବ ଏଥିରେ ସନ୍ଦେହ ନାହିଁ । ଅବଶ୍ୟ ଅତୀତର ଅସଙ୍ଗତ ଅବସ୍ଥା ନିରାକରଣ ସହଜ ବ୍ୟାପାର ନୁହେ । ଅତୀତର ଧାରା ଓ ବର୍ତ୍ତମାନର ଗତି ବିବେଚନାରେ ନୂତନ ନୂତନ ଭୂଖଣ୍ଡମାନ ଗଠିତ ହେବ । ଏହି ସମସ୍ୟାର ସନ୍ତୋଷଜନକ ସମାଧାନ ସଦିଚ୍ଛା, ଦୃଢ଼ତା ଓ ଦୂରଦର୍ଶିତା ଦ୍ୱାରା ସମ୍ଭବ

ହୋଇପାରେ ଓ ହେବା ମଧ୍ୟ ବାଞ୍ଛନୀୟ । କୋଶଳର ପୁନର୍ମିଳନ ସମ୍ଭବ କି ନା ପରୀକ୍ଷା କରି ଦେଖିବା ଏହି ପୁସ୍ତିକାର ଉଦ୍ଦେଶ୍ୟ । ପରବର୍ତ୍ତୀ ପୃଷ୍ଠାମାନଙ୍କରେ ଏହି ସମସ୍ୟାର ବିଚାର ପ୍ରାକୃତିକ ବିଜ୍ଞାନର ଦୃଷ୍ଟିକୋଣରୁ କରାଯାଇଅଛି ଏବଂ ଏଠାରେ ବର୍ଣ୍ଣିତ ହୋଇଥିବା ତାହାହିଁ ସତ୍ୟର ପନ୍ଥା । ସମସ୍ୟାର ଠିକ ସମାଧାନ ପ୍ରାକୃତିକ ନିୟମର ଭିତ୍ତିରେ ପ୍ରତିଷ୍ଠିତ ହେଲେ ଯଥାର୍ଥ ଓ ଚିରସ୍ଥାୟୀ ହୋଇଥାଏ । ତେଣୁ ଏହି ପ୍ରଶ୍ନ ପରୀକ୍ଷା କଲାବେଳେ ମାନବ ଜାତିର ବିବର୍ତ୍ତନ ଓ ବିକାଶର ନିୟାମକ ମୌଳିକ କାରଣମାନଙ୍କୁ ଉପେକ୍ଷା ନ କରିବା ଏକାନ୍ତ ଆବଶ୍ୟକ । ପ୍ରଥମ ପରିଚ୍ଛେଦରେ ବିଶ୍ଳେଷଣମୂଳକ ଐତିହାସିକ ଦୃଷ୍ଟି କୋଣରୁ ମୌଳିକ ନିୟାମକ କାରଣ ଓ ପ୍ରବୃତ୍ତି ଗୁଡ଼ିକ ନିର୍ଦ୍ଧାରଣ କରିବାକୁ ଯତ୍ନ କରାଯାଇଅଛି ଓ ନିର୍ଦ୍ଧାରିତ ତଥ୍ୟ ଗୁଡ଼ିକର ସାହାଯ୍ୟରେ ଏହି ପରିଚ୍ଛେଦ ଓ ପରବର୍ତ୍ତୀ ପରିଚ୍ଛେଦମାନଙ୍କରେ କୋଶଳର ସମସ୍ୟାବଳୀ ପରୀକ୍ଷା କରା ଯାଇଅଛି । ଉପନୀତ ସିଦ୍ଧାନ୍ତ ଗୁଡ଼ିକର ସପକ୍ଷରେ ଐତିହାସିକ ଦୃଷ୍ଟାନ୍ତ ଦେଇଥିଲେ ପୁସ୍ତିକାର କଳେବର ଅଯଥା ବୃଦ୍ଧି-ପ୍ରାପ୍ତ ହୋଇଥାଆନ୍ତା, ତେଣୁ ତାହା କରା ଯାଇନାହିଁ । ଯେଉଁ ଐତିହାସିକ ପୃଷ୍ଠ-ଭୂମିକୁ ମୂଳକରି ଏ ସବୁ ସିଦ୍ଧାନ୍ତ କରା ଯାଇଅଛି, ତାହା ସ୍ମରଣ କରିବାକୁ କିମ୍ବା ଯୁକ୍ତିର ଅବତାରଣା ହୃଦୟଙ୍ଗମ କରିବାକୁ ଅବଶ୍ୟ କୋଶଳବାସୀ ଓ କୋଶଳର ଐତିହାସିକଗଣଙ୍କ ପକ୍ଷରେ କଷ୍ଟକର ହେବନାହିଁ । ପ୍ରକୃତ ଘଟଣା, ସିଦ୍ଧାନ୍ତ ଓ ପ୍ରସ୍ତାବ ଗୁଡ଼ିକ ସ୍ପଷ୍ଟଭାବରେ ବୋଧଗମ୍ୟ ହୋଇପାରିବ ବୋଲି ଏହି ପୁସ୍ତିକାରେ କେତେଗୁଡ଼ିଏ ମାନଚିତ୍ର ଓ ଯୋଜନା ସନ୍ନିବେଶିତ ହୋଇଅଛି । ଉପସ୍ଥାପିତ ପ୍ରସ୍ତାବ ଓ ଉପନୀତ ସିଦ୍ଧାନ୍ତ କୋଶଳର ହୃଦୟ ସ୍ୱରୂପ ସମ୍ବଲପୁର ଅଞ୍ଚଳବାସୀଙ୍କ ବିଶେଷ ପ୍ରଣିଧାନଯୋଗ୍ୟ । ଆଶା କରାଯାଏ ଯେ ମୋଟାମୋଟି ଭାବରେ ପ୍ରସ୍ତାବ ଗୁଡ଼ିକ ପୂର୍ବ ଗଡ଼ଜାତ ମଣ୍ଡଳ ଓ ଅନ୍ୟାନ୍ୟ ଓଡ଼ିଆ କୃଷ୍ଟିଗତ ବିଭାଗର ମୂଲ୍ୟବାନ୍ ଆଦରର ସାମଗ୍ରୀ ହେବ ।

—( ※ )—

# ପ୍ରଥମ ପରିଚ୍ଛେଦ ।

## ଅତୀତର ଲକ୍ଷ୍ୟ ଓ ବର୍ତ୍ତମାନର ଗତିଧାରା

### ସମାଜ ଓ ରାଜ୍ୟର କ୍ରମ ବିକାଶ :—

ସମାଜର କ୍ରମବିକାଶ ବ୍ୟକ୍ତିଠାରୁହିଁ ଆରବ୍ଧ ହୋଇଅଛି । ଆଦିମ ମାନବ ବ୍ୟକ୍ତିତ୍ୱରେ ଥିଲା ମୁକ୍ତି, ସେ ଥିଲା ସ୍ୱାଧୀନ, ସ୍ୱାବଲମ୍ବନଶୀଳ ଓ ନିଜେ ନିଜର ଏକଚ୍ଛତ୍ରାଧିପତି । କିନ୍ତୁ ବିକାଶର ପ୍ରୟୋଜନୀୟତା ସଙ୍ଗେ ସଙ୍ଗେ ସେ ଅନୁଭବ କଲା ନିଜକୁ ପାରିପାର୍ଶ୍ୱିକ ଅବସ୍ଥାର ଉପଯୋଗୀ କରିବାର ଅଭାବ । ପରିସ୍ଥିତିରୁ ଆଦୌ ଅଲଗା ରଖି, ନିଜକୁ ଗୋଟାଏ ଅବାସ୍ତବ ବ୍ୟକ୍ତିତ୍ୱର ରୂପ ଦେଇ ମାନବ ତିଷ୍ଠି ପାରିଲା ନାହିଁ । ପ୍ରକୃତି ସଙ୍ଗରେ ତାହାର ପ୍ରଥମ ସହଯୋଗ ପୂର୍ଣ୍ଣଭାବରେ ସ୍ୱାର୍ଥକେନ୍ଦ୍ରିତ; ତାହା ଗୋଟିଏ ଅମିଶ୍ର ଓ ନିରଙ୍କୁଶ ଆଧିପତ୍ୟର ନାମାନ୍ତର । ସେ ଭାବୁଥିଲା ଯେ ସମଗ୍ର ଜଗତଟା ତାରି ଅଧିକାରଗତ, ସୁତରାଂ ସେ ନିଜ ଇଚ୍ଛା-ଅନୁସାରେ ତାକୁ ଚଳାଇବ । ଆତ୍ମ-ବିକାଶ ପାଇଁ ଏବଂ ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ ବୃଦ୍ଧି ନିମନ୍ତେ ଯେଉଁ ଅଭାବ ଗୁଡ଼ିକ ଅନୁଭବ କଲା, ତାହା ପୂରଣ କରିବା ଉଦ୍ଦେଶ୍ୟରେ ସେ ସୃଷ୍ଟି କଲା ପାରିବାରିକ ଜୀବନ । ପରିବାରର ସୃଷ୍ଟି ସଙ୍ଗେ ସଙ୍ଗେ ସମଷ୍ଟିର ସାଧାରଣ ମଙ୍ଗଳ ପାଇଁ ଆତ୍ମ-ସଂଯମର ଆବଶ୍ୟକତା ପଡ଼ିଲା । ଆଉ ମଧ୍ୟ ବ୍ୟକ୍ତିଗତ ଅଧିକାର ଓ ସ୍ୱାଧୀନତା ସୀମାବଦ୍ଧ ହେବାକୁ ଲାଗିଲା । କ୍ରମେ କ୍ରମେ ବିବର୍ତ୍ତନ ଫଳରେ ବୃହତ୍ତର ଗୋଷ୍ଠୀ ଗୁଡ଼ିକର ଉଦ୍‌ଭବ ହେଲା ଏବଂ ପରିଶେଷରେ ବିକାଶର ଚରମ ପରିଣତି ସ୍ୱରୂପ ଆଧୁନିକ ଜଟିଳ ବିଧିବଦ୍ଧ ସମାଜ ରାଷ୍ଟ୍ର ଓ ରାଜ୍ୟର ସୃଷ୍ଟି ହେଲା । ବିକାଶ-ଧାରାର ବର୍ତ୍ତମାନ ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରବେଶ କରିଥିବାରୁ ମାନବକୁ ବ୍ୟକ୍ତିଗତ ଭାବରେ ଯେପରି ସମଷ୍ଟି କଲ୍ୟାଣ ପାଇଁ ସଂଯତ ହେବାକୁ ଓ ବ୍ୟକ୍ତିଗତ ଅଧିକାର ସୀମାବଦ୍ଧ କରିବାକୁ ପଡ଼ିଥିଲା, ତଦ୍‌ବତ୍ ଜଗତର ସମଷ୍ଟି ମଙ୍ଗଳ ପାଇଁ ଜାତିଗୁଡ଼ିକୁ ମଧ୍ୟ ନିଜ ନିଜ ଜାତୀୟ ଅଧିକାର ସୀମାବଦ୍ଧ କରି ଜାତୀୟ ସମ୍ବନ୍ଧ ବ୍ୟବସ୍ଥାର କରିବାକୁ ପଡ଼ିବ । ତା ନ ହେଲେ ଯେ ଆନ୍ତର୍ଜାତୀୟ ଜୀବନରେ ନାନା ପ୍ରକାର ବିବାଦ ବିସମ୍ବାଦ, ବିଶୃଙ୍ଖଳା ଓ ଗଣ୍ଡଗୋଳର ସୃଷ୍ଟି ହେବ ଏଥିରେ ସନ୍ଦେହର ତିଳେ ମାତ୍ର ଅବକାଶ ନାହିଁ ।

## ବ୍ୟକ୍ତିଗତ ସ୍ୱାଧୀନତା ଓ ସମଷ୍ଟି କଲ୍ୟାଣ ଆତ୍ମସଂଯମ ଓ ସମଗ୍ର ଶକ୍ତି ସାମର୍ଥ୍ୟର ଏକତ୍ର ବ୍ୟବହାର :—

ବିବର୍ତ୍ତନର ପ୍ରତ୍ୟେକ ସ୍ତରରେ ଦୁଇଟି ବିରୁଦ୍ଧ ଶକ୍ତି କାର୍ଯ୍ୟ-କାରୀ ହୋଇଥାଏ । ଏକ ପକ୍ଷରେ ବ୍ୟକ୍ତିଗତ ସ୍ୱାଧୀନତା ବ୍ୟକ୍ତିତ୍ୱ ଓ ଆତ୍ମଶାସନାଧିକାର ସଂରକ୍ଷଣର ବାସନା ଏବଂ ପକ୍ଷାନ୍ତରେ ନିଜର ଓ ସର୍ବସାଧାରଣଙ୍କ ମଙ୍ଗଳ ପାଇଁ ସଂଯମ, ଅଧୀନତା ସ୍ୱୀକାର, ଓ ନିଜର ଶାସନାଧିକାର ଏବଂ ସମଗ୍ର ପ୍ରକାର ଶକ୍ତି ଓ ସାମର୍ଥ୍ୟ ପ୍ରୟୋଗର ପ୍ରୟୋଜନୀୟତା । ଏହି ବ୍ୟକ୍ତିଗତ ସତ୍ୟ ବୃହତ୍ତର ସମଷ୍ଟି-ପାଇଁ ମଧ୍ୟ ପ୍ରଯୁଜ୍ୟ । ପରିବାର, ଗୋଷ୍ଠୀ, ଗ୍ରାମ ଓ ତଦପେକ୍ଷା ବୃହତ୍ତର ସଂହତି-ଗୁଡ଼ିକରେ ବ୍ୟକ୍ତିଗତ ଗୁଣାବଳୀ ବିଦ୍ୟମାନ ଥାଏ ଓ ସେମାନେ ଆତ୍ମ-ଶାସନାଧିକାର ଓ ସ୍ୱାଧୀନତା ବଜାୟ ରଖିବାକୁ ସର୍ବଦା ଜାଗରୁକ ଥାଆନ୍ତି । ଏହି ପ୍ରବୃତ୍ତି ସାଧାରଣତଃ ମାନବକୁ ସଂକୀର୍ଣ୍ଣ ସ୍ୱାର୍ଥପରତାର ବଶବର୍ତ୍ତୀ କରିଥାଏ । କିନ୍ତୁ ବିଶ୍ୱର ପ୍ରାକୃତିକ ନିୟମାନୁଯାୟୀ ବିରୁଦ୍ଧ ଶକ୍ତି କାର୍ଯ୍ୟ କରିବା ଫଳରେ ସେ ପରସ୍ପର ନିର୍ଭରଶୀଳତା ଓ ସହଯୋଗ ଆଡ଼କୁ ଆକୃଷ୍ଟ ହେବାକୁ ବାଧ୍ୟ ହୁଏ । ଏହି ବିରୁଦ୍ଧ ଦିଗଭିମୁଖୀ ପ୍ରବୃତ୍ତିଦ୍ୱୟ ବ୍ୟକ୍ତି ଓ ଅନ୍ୟାନ୍ୟ ବ୍ୟଷ୍ଟିଗତ ଅବସ୍ଥିତିର ସଂରକ୍ଷଣ ଓ ବୃଦ୍ଧି ସକାଶେ ନିତାନ୍ତ ଆବଶ୍ୟକ । ଗୋଟିଏ ବ୍ୟକ୍ତିଗତ ପ୍ରବୃତ୍ତିର ଉତ୍ସାହଦାୟୀ—ଅପରଟି ସହଯୋଗ ମୂଳକ କାର୍ଯ୍ୟର ଗତିବିଧାୟକ । ସୁତରାଂ ବ୍ୟକ୍ତି ଓ ସମାଜର ମଙ୍ଗଳ ପାଇଁ ଉଭୟଙ୍କର ଆବଶ୍ୟକତା ଅଛି । ଏ ଦୁଇଟିଯାକ କେନ୍ଦ୍ରାପସାରଣୀ ଓ କେନ୍ଦ୍ରାଭିମୁଖିନୀ ଶକ୍ତିକୁ ନିଜ ନିଜ ଗତି [illegible] କରାଏ ଓ ଏହାହିଁ ସାରା ପ୍ରକୃତିର ବିବର୍ତ୍ତନ ଓ ବୃଦ୍ଧିର ନିୟମ ।

## ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ଓ କେନ୍ଦ୍ରୀଭୂତ କରଣ :—

ଯେଉଁ ବ୍ୟକ୍ତି ଯେତେ ପରିମାଣରେ ନିଜର ସମଷ୍ଟି ସହିତରେ ସହଯୋଗ କରିବାରେ ସକ୍ଷମ ହୁଏ, ସେ ସେତିକି ପରିମାଣରେ ସାମାଜିକ ମଣ୍ଡିତ ହୋଇ ସୁଖର ଅଧିକାରୀ ହୁଏ । ଏହି ଉକ୍ତିର ସତ୍ୟତା ସମଷ୍ଟି ପକ୍ଷରେ ମଧ୍ୟ ପ୍ରଯୁଜ୍ୟ । ପ୍ରତ୍ୟେକ ବ୍ୟଷ୍ଟି ଓ ସମଷ୍ଟି ଅନ୍ୟାନ୍ୟ ବୃହତ୍ତର ସମଷ୍ଟିର ଅଂଶ ମାତ୍ର ଏବଂ ଏହି ବୃହତ୍ତର ସମଷ୍ଟିରୁ ପ୍ରତ୍ୟେକ ବ୍ୟଷ୍ଟି ବା ସମଷ୍ଟିର ପରିପୁଷ୍ଟି । ନିଜର ନିକଟବର୍ତ୍ତୀ ଓ ଦୂରଗତ ବ୍ୟକ୍ତିଙ୍କୁ ପୂର୍ଣ୍ଣଭାବରେ ଛାଡ଼ି କୌଣସି ବ୍ୟକ୍ତି ସୁଖୀ ହୋଇ ପାରେ ନା

କିମ୍ବା ବୃଦ୍ଧିଲାଭ କରି ପାରେ ନା । ତେଣୁ ବ୍ୟକ୍ତିଗତ ସଂଯମ ଓ ସମୂହ କଲ୍ୟାଣ-ପାଇଁ ସମଗ୍ର ଶକ୍ତି ଓ ସାମର୍ଥ୍ୟର ଏକତ୍ରୀକରଣ ଓ ସୁବ୍ୟବହାର କରିବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ସ୍ୱାଧୀନତା ଓ ନେତୃତ୍ୱ ବଜାୟ ରଖିବା ଏକାନ୍ତ ଆବଶ୍ୟକ । କାରଣ ତା' ନ ହେଲେ କୌଣସି ବ୍ୟକ୍ତି ବା ସମାଜ ଉନ୍ନତି ସାଧନ କରି ନ ପାରେ । ବୃହତ୍ତର ଗୋଷ୍ଠୀ ମଧ୍ୟରେ ସର୍ବସାଧାରଣଙ୍କ ସ୍ୱାର୍ଥରକ୍ଷା ପାଇଁ କେନ୍ଦ୍ର ଶକ୍ତି ଗଠନ ଓ ସହଯୋଗ ଯେପରି ଆବଶ୍ୟକ, ଗୋଷ୍ଠୀଭୁକ୍ତ ବିଭିନ୍ନ ଭୂଖଣ୍ଡର ଉନ୍ନତି ପାଇଁ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ, ସ୍ଥାନୀୟ ନେତୃତ୍ୱ ଓ ଦେଶପ୍ରୀତି ସେହି ପରିମାଣରେ ପ୍ରୟୋଜନୀୟ ।

## କେନ୍ଦ୍ରାଭିମୁଖିନୀ ଓ କେନ୍ଦ୍ରାପସାରିଣୀ ପ୍ରବୃତ୍ତି :—

ବର୍ତ୍ତମାନର ସାରା ଇତିହାସରୁ ଏହା ପ୍ରମାଣିତ ହୁଏ ଯେ ଏହି ପରସ୍ପର ବିରୁଦ୍ଧ-ସ୍ୱଭାବାପନ୍ନ ପ୍ରବୃତ୍ତିଦ୍ୱୟ ଏକତ୍ର କାର୍ଯ୍ୟକାରୀ ହେବା ଫଳରେ ବିକାଶ ଓ ଉନ୍ନତି ସାଧିତ ହୋଇଅଛି । ପ୍ରାକୃତିକ କିମ୍ବା କୃତ୍ରିମ କାରଣ ବଶତଃ ଏହି ପ୍ରବୃତ୍ତି ଦୁଇଟି ମଧ୍ୟରୁ ଯେ କୌଣସିଟି ପ୍ରବଳତର ଭାବରେ ସକ୍ରିୟ ହେବା ଫଳରେ ପାରିପାର୍ଶ୍ୱିକ ଅବସ୍ଥା ସଙ୍ଗେ ସହଯୋଗ କରି ନ ପାରିଲେ କିମ୍ବା ବିକାଶ ପାଇଁ ଯାହା ଆବଶ୍ୟକ ତାହା ପୂରଣ କରି ନ ପାରିଲେ ସମ୍ପର୍କୀୟ ପ୍ରତ୍ୟେକ ଅଞ୍ଚଳ ବା ରାଜ୍ୟାଂଶ ଗୁଡ଼ିକ ଆପଣାକୁ ପରିସ୍ଥିତିର ଉପଯୋଗୀ କରି ଅଥବା ବିକାଶ ସକାଶେ ଯାହା ଯାହା ଆବଶ୍ୟକ ସେ ସବୁ ପୂରଣ କରି ଶିଖି ସ୍ୱାଭାବିକ ଉନ୍ନତି ପଥରେ ଯେ ପର୍ଯ୍ୟନ୍ତ ଅଗ୍ରସର ହୋଇ ନାହାନ୍ତି ସେ ପର୍ଯ୍ୟନ୍ତ ସେମାନଙ୍କୁ ଅନେକ ଦୁଃଖ ଦୁର୍ବିପାକ ସହିବାକୁ ପଡ଼େ । ତେଣୁ ଦେଶର ସମୂହ- କଲ୍ୟାଣ ପାଇଁ ଅତ୍ୟଧିକ କେନ୍ଦ୍ରୀଭୂତକରଣ ଯେପରି ପରିତ୍ୟାଜ୍ୟ ଏକଦେଶଦର୍ଶୀ ସ୍ୱାତନ୍ତ୍ର୍ୟ ମଧ୍ୟ ତଦ୍ରୂପ ପରିହାର୍ଯ୍ୟ ।

## ସମଷ୍ଟିଗତ ସଂହତି :—

ପରିବାର ଓ ତଦପେକ୍ଷା ବୃହତ୍ତର ସମାଜର ସଂହତି ଓ ରାଜ୍ୟର ଗଠନ କେତେଗୁଡ଼ିଏ ସାଧାରଣ ନିୟମର ବଶବର୍ତ୍ତୀ । ଭୌଗୋଳିକ ଅବସ୍ଥାନ, ଐତିହାସିକ ପରିସ୍ଥିତି, କୃଷ୍ଟିର ସମତା, ଭାଷା, ପାରମ୍ପରିକତା, ବ୍ୟବହାର, ସାମାଜିକ ରୀତି ଓ ଜୀବନଯାପନ ପ୍ରଣାଳୀ, ଏ ଗୁଡ଼ିକ ବୃଦ୍ଧିର ପ୍ରତ୍ୟେକ ସୋପାନରେ ବିଭିନ୍ନ ସଂହତିର ଗଠନ ଓ ସମଷ୍ଟିଗତ ଖଣ୍ଡ ଓ ଉପଖଣ୍ଡ ମାନଙ୍କର ଅଙ୍ଗୁଳମଧ୍ୟ ନିର୍ଣ୍ଣୟ କରେ । କେନ୍ଦ୍ର-ଶକ୍ତିଠାରୁ ସମଷ୍ଟିଗତ ଭିନ୍ନ ଭିନ୍ନ ଖଣ୍ଡ ଓ ଉପଖଣ୍ଡଗୁଡ଼ିକ କ୍ଷମତା ପାଇବା ଅସ୍ୱାଭାବିକ

ପ୍ରଣାଳୀରେ ନ ହୋଇ ଉଚ୍ଚ ବ୍ୟକ୍ତିଠାରୁ ଉଚ୍ଚତର ଅତିକୁ କ୍ଷମତା ଓ ପ୍ରଭୁତ୍ୱ ପ୍ରସାର ଲାଭ କରିବା ଦ୍ୱାରା ଶାସନ-ସଂହତି ଗଠିତ ହୁଏ, ତେବେ ଏ ଗୁଡ଼ିକ ଭିନ୍ନ ଭିନ୍ନ ସମକକ୍ଷଗତ କ୍ଷେତ୍ର ଓ ଉପକ୍ଷେତ୍ରର ଅଭାବ ପୂରଣରେ ସକ୍ଷମ ହୋଇଥାଏ ।

## ବିଭିନ୍ନ ସଂହତିର ପୂର୍ଣ୍ଣ ଶାସନାଧିକାର ଓ କ୍ଷମତା :—

ସମାଜର କ୍ଷୁଦ୍ରତମ ସଂହତି ବ୍ୟକ୍ତିଠାରୁ ଆରମ୍ଭ କରି ବୃହତ୍ତମ ସମସ୍ତ ସଂହତି ଗୁଡ଼ିକ ନିଜର ଆବଶ୍ୟକତା ଓ ଶକ୍ତି ଅନୁସାରେ ଆଧିପତ୍ୟ ଓ କ୍ଷମତା ନିଜ ହାତରେ ରଖିଥାନ୍ତି । କ୍ଷମତା ଓ ସାମର୍ଥ୍ୟ, ଯାହା କୌଣସି ସଂହତିର ବହିର୍ଭୂତ ତାହା ସର୍ବସାଧାରଣଙ୍କ ଉପକାର ପାଇଁ ବୃହତ୍ତର ସଂହତିଦ୍ୱାରା ବ୍ୟବହୃତ ହୋଇଥାଏ । ଦୃଷ୍ଟିର ସଂକୀର୍ଣ୍ଣତା, ଅମୃଗ୍ରାଧାନ୍ୟ ଅଥବା ସ୍ଥାନୀୟ ସ୍ୱାର୍ଥପରତା ଯୋଗୁଁ ଯେତେବେଳେ କୌଣସି ସଂହତି, ତାର ଯେତକ ଦରକାର କିମ୍ବା ଯେତିକି ନିଜ ଶକ୍ତି ଓ ସାମର୍ଥ୍ୟର ଅନୁବର୍ତ୍ତୀ ସେତିକି ନ ରଖି ତହୁଁରୁ ଅଧିକ ନିଜ ହାତରେ ରଖିବାକୁ ଚେଷ୍ଟାକରେ ସେତେବେଳେ ସଂପବଦ୍ଧ ବ୍ୟଷ୍ଟି-ଗଣଙ୍କ ମଧ୍ୟରେ ଏବଂ ବୃହତ୍ତର ସଂହତି ସଙ୍ଗରେ ମଧ୍ୟ ସଙ୍ଘର୍ଷ ଉପସ୍ଥିତ ହୁଏ ଏବଂ ଏପରି ସଂଘର୍ଷର ସୃଷ୍ଟି ନ ହେଲେ ମଧ୍ୟ ଅବ୍ୟବହୃତ ଓ ଅନାବଶ୍ୟକ ଶକ୍ତି ଓ ସାମର୍ଥ୍ୟ ଗୁଡ଼ିକୁ ଅଯଥା ନିଷ୍କ୍ରିୟ କରି ରଖିବାରୁ ଉନ୍ନତିର ପଥ ପ୍ରତିହତ ହୋଇଥାଏ ।

## ବାହ୍ୟକାରଣବଶତଃ ବିଶୃଙ୍ଖଳା :—

ସ୍ୱାଭାବିକ କ୍ରମବିକାଶ-ପ୍ରକ୍ରିୟାରେ ବିଶୃଙ୍ଖଳା ସୃଷ୍ଟି ହେବାର ଆଭ୍ୟନ୍ତରୀଣ କାରଣ ତ ଅଛି, କିନ୍ତୁ ତା ଛଡ଼ା ଅନେକ ବାହ୍ୟ କାରଣରୁ ମଧ୍ୟ ବୃଦ୍ଧି ଓ ବିକାଶର ପଥ ସ୍ୱଚ୍ଛନ୍ଦ ନ ହୋଇ ତହିଁରେ ନାନାପ୍ରକାର ବିଶୃଙ୍ଖଳା ଉପସ୍ଥିତହୋଇ ତାହାର ସ୍ୱଚ୍ଛନ୍ଦ ଗତି ରୁଦ୍ଧ କରେ । ଯେତେବେଳେ କୌଣସି ସଂହତି ନିଜ ରାଜ୍ୟ ବିସ୍ତାରର ଉଚ୍ଚାଭିଳାଷ ଦ୍ୱାରା ପ୍ରେରିତ ହୋଇ ଅନ୍ୟର ରାଜ୍ୟ ଆକ୍ରମଣ କରେ କିମ୍ବା ତାର ବିରୁଦ୍ଧରେ ଯୁଦ୍ଧ କରେ ସେତେବେଳେ ଏହି ବାହ୍ୟ କାରଣ ଗୁଡ଼ିକ ପରିଲକ୍ଷିତ ହୁଏ । ଏହି ପରସ୍ୱାପହରଣ-ପ୍ରଚେଷ୍ଟାର ପ୍ରକାର ଭେଦରେ ବିଶୃଙ୍ଖଳାର ପ୍ରକୃତି ଓ ପ୍ରବୃତ୍ତି ନିର୍ଭର କରେ । ସମକକ୍ଷଗତ କୌଣସି ସ୍ୱାଧୀନ ରାଜ୍ୟାଂଶ ଅନ୍ୟାନ୍ୟ ସ୍ୱାଧୀନ ରାଜ୍ୟାଂଶ ଗୁଡ଼ିକ ଅଧିକାର କରି ବିସ୍ତୃତ ଲାଭକରେ; ଆପାତତଃ ତାରି ଫଳହୁଏ ଶାସନ ଶକ୍ତିର ଏକତ୍ରୀକରଣ ଓ

ସମ୍ମିଳନ । କିନ୍ତୁ ତାହା ଯଦି କୌଣସି ବୈଦେଶିକ ଶକ୍ତିଦ୍ୱାରା ହୋଇଥାଏ, ତେବେ ବିଶୃଙ୍ଖଳା ଭୀଷଣତର ହୋଇଉଠେ । ଆଉମଧ୍ୟ, ଯଦି ଆକ୍ରମଣର ଉଦ୍ଦେଶ୍ୟ ହୋଇଥାଏ କେବଳ ଧ୍ୱଂସସାଧନ ଓ ଲୁଣ୍ଠନ, ତେବେ ପୀଡ଼ାର ମାତ୍ରାତିଶଯ୍ୟରେ ପାର୍ଥକ୍ୟ ରହିଲେ ମଧ୍ୟ ତାହା ଅଳ୍ପକାଳସ୍ଥାୟୀ ହୋଇଥାଏ । କିନ୍ତୁ ରାଜ୍ୟ ଅଧିକାର କରି ତାକୁ ଶାସନ କରିବା ଉଦ୍ଦେଶ୍ୟରେ ଯଦି ଆକ୍ରମଣ କରାଯାଏ, ତେବେ ବୃଦ୍ଧିର ପଥ ବହୁକାଳ ପର୍ଯ୍ୟନ୍ତ ଅବରୁଦ୍ଧ ରହିଯାଏ ।

## କୋଶଳର ବିବର୍ତ୍ତନ ପ୍ରଣାଳୀର ସଂକ୍ଷିପ୍ତ ଆଲୋଚନା :—

କୋଶଳର ବିବର୍ତ୍ତନ ଧାରାର ଇତିହାସରୁ ଜଣାଯାଏ ଯେ ଉପର୍ଯ୍ୟୁକ୍ତ କାରଣ ଗୁଡ଼ିକ ପରସ୍ପର ମଧ୍ୟରେ ସକ୍ରିୟ ହୋଇ ତାକୁ ସଂସ୍କୃତିଗତ ଗୋଟିଏ ସଂଘବଦ୍ଧ ରାଜ୍ୟରେ ପରିଣତ କରିଥିଲା । ପୌରାଣିକ ଯୁଗରେ କୋଶଳ ଗୋଟିଏ ସଂସ୍କୃତିଗତ ରାଜ୍ୟରେ ପରିଣତ ହେଲା । ପ୍ରାରମ୍ଭରୁ କୃଷିଗତ ସଂହତିର ସ୍ୱାୟତ୍ତଶାସନଯୁକ୍ତ ରାଜ୍ୟାଂଶ ରୂପେ ଗ୍ରାମଗୁଡ଼ିକ ଗଠିତ ହୋଇଥିବା ଜଣାଯାଏ ଏବଂ ଏହି ଅଞ୍ଚଳରେ ବହୁ ପୂର୍ବରୁ ପଞ୍ଚାୟତ ପ୍ରଥା ଅବିଚ୍ଛେଦ୍ୟ ଭାବରେ ଚାଲି ଆସୁଥିବାରୁ ତହିଁରୁ ସ୍ପଷ୍ଟ ଜଣାପଡ଼େ ଯେ କେବଳ ମରହଟ୍ଟା ଆକ୍ରମଣ ଓ ତତ୍‌କୃତ ଧ୍ୱଂସଲୀଳା-ସମୟ ବାଦ୍ ଦେଲେ ଗ୍ରାମସ୍ତରରେ ଆଉ କେବେ ବୋଧହୁଏ ବିକାଶ ଧାରାରେ କୌଣସି ପ୍ରକାର ବିଶୃଙ୍ଖଳା ହୋଇ ନ ଥିଲା । ଆଉ ମଧ୍ୟ ଉର୍ଦ୍ଧ୍ୱ ସ୍ତରରେ ଯେତେବେଳେ ଯେଉଁ ପରିବର୍ତ୍ତନ ଘଟିଥିଲା, ତାହା ନିମ୍ନତମ ରାଜନୈତିକ ଓ କୃଷିଗତ ବିଭାଗ ରୂପେ ଅବସ୍ଥିତ ଗ୍ରାମଗୁଡ଼ିକୁ ସାଧାରଣତଃ ସ୍ପର୍ଶ କରି ପାରୁ ନ ଥିଲା । କିନ୍ତୁ ବିଭିନ୍ନ ଯୁଗରେ ଭିନ୍ନ ଭିନ୍ନ ନାମରେ ବିଦିତ ଖଣ୍ଡ, ମଣ୍ଡଳ, ବିଷୟ, ଉମରାଇ, ଇଲାକା, ଗଡ଼ ପ୍ରଭୃତି ଗ୍ରାମ ଅପେକ୍ଷା ବୃହତ୍ତର ସଂହତି ଗୁଡ଼ିକ ବୋଧହୁଏ ସମ୍ପୂର୍ଣ୍ଣ ରୂପେ ଅକ୍ଷୁର୍ଣ୍ଣ ରହି ପାରି ନ ଥିଲା । ଶାସନଗତ ସୁବିଧାରୁ ହେଉ ଅଥବା ବାହାରର କୌଣସି ନୃପ-ପ୍ରଭାବରୁ ହେଉ, ଏହି ବୃହତ୍ତର ରାଜ୍ୟାଂଶ ଗୁଡ଼ିକରେ ସମୟ ସମୟରେ ପରିବର୍ତ୍ତନ ଘଟୁଥିଲା । ବହୁ ଶତାବ୍ଦୀ ପୂର୍ବେ ବିଭିନ୍ନ ସମୟରେ କୃଷିଗତ ଉପବିଭାଗ ଓ ସ୍ୱାୟତ୍ତଶାସନଯୁକ୍ତ ଭୂଖଣ୍ଡ ରୂପେ ରାଜ୍ୟ ଗୁଡ଼ିକ ସଂଗଠିତ ହୋଇଥିବା ଜଣାପଡ଼େ । ପୌରାଣିକ ଓ ହିନ୍ଦୁ ଯୁଗରେ ଏବଂ ମୋଗଲ ଶାସନ କାଳ ମଧ୍ୟରେ ଭିନ୍ନ ଭିନ୍ନ ସମୟରେ ରାଜା ଓ ସମ୍ରାଟମାନଙ୍କ ରାଜତ୍ୱରେ ଏକତ୍ରୀକରଣର ପ୍ରେରଣା ସମାଜର ନିମ୍ନସ୍ତରରୁ ଆସି ନ ଥିବାରୁ ତାହା ସେହି ବିବର୍ତ୍ତନ-ଯୁଗରେ

ବୃଦ୍ଧିର ଆବଶ୍ୟକ ଉପାଦାନ ଯୋଗାଇ ପାରି ନ ଥିଲା । [illegible] ପ୍ରତ୍ୟେକ କ୍ଷେତ୍ରରେ କେନ୍ଦ୍ରୀଭୂତକରଣର ପ୍ରାଥମିକ ଉଦ୍ୟମ ଉତ୍କଳୀୟ [illegible] ମାନଙ୍କ ଦ୍ୱାରା ହୋଇଥିବାରୁ ଶାସନଗତ ଏକତା [illegible] କୋଶଳର କୃଷ୍ଟିଗତ ଏକତା ଅନେକ ପୂର୍ବରୁ ସମାହିତ ହୋଇଥିବା ବୋଧହେଲେ ମଧ୍ୟ ସ୍ଥାୟୀ ରାଜନୈତିକ ସଂହତିର ବଦଳିନେ କେବଳ ସ୍ୱତନ୍ତ୍ର ଏକାଧିକ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଷ୍ଟ୍ର ଗଠନର ସ୍ତର ପର୍ଯ୍ୟନ୍ତ ଅଗ୍ରସର ହୋଇ ପାରିଥିଲା, ଏବଂ ପଠାଣ ଓ ମୋଗଲ ଶାସନ ପୂର୍ବେ କେନ୍ଦ୍ରଶକ୍ତି ଅଥବା ବୃହତ୍ତର ସଂହତି ଗଠନର ପ୍ରକୃତ ପ୍ରେରଣା ବୋଧହୁଏ ଅନୁଭୂତ ହୋଇ ନ ଥିଲା । ଭିନ୍ନ ଭିନ୍ନ ସଂହତି ସବୁର ଅଭାବ ଅଳ୍ପ ଥିଲା ଓ ସେ ଗୁଡ଼ିକ ସାମାନ୍ୟ ରକମର ମଧ୍ୟ ଥିଲା । ତେଣୁ କୃଷ୍ଟିଗତ ଓ ରାଜନୈତିକ କ୍ଷୁଦ୍ର କ୍ଷୁଦ୍ର ସଂହତି ଗୁଡ଼ିକ ନିଜ ଶକ୍ତି ବଳରେ ସେ ଗୁଡ଼ିକୁ ପୂରଣ କରିବା ସକାଶେ ସମର୍ଥ ହୋଇଥିଲେ । ନିଜ ନିଜ ଅଭାବପୂରଣ ବିଷୟରେ ସେମାନେ ବାସ୍ତବରେ ଆତ୍ମନିର୍ଭରଶୀଳ ଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ଏହି କ୍ଷୁଦ୍ର ରାଜ୍ୟ ଗୁଡ଼ିକର ଅଭାବ ଅନ୍ତତଃ ବାହ୍ୟ ଶତ୍ରୁ ଆକ୍ରମଣରୁ ଆତ୍ମରକ୍ଷା କରିବା ବିଷୟରେ ବୃଦ୍ଧି ପାଇ ସେମାନଙ୍କ ଶକ୍ତି ଓ ସାମର୍ଥ୍ୟର ସୀମା ଅତିକ୍ରମ କରିଥିବା ପ୍ରତୀୟମାନ ହୁଏ । କିନ୍ତୁ ସ୍ୱତନ୍ତ୍ର ରହି ସ୍ୱାତନ୍ତ୍ର୍ୟ ଶାସନାଧିକାର ବଜାୟ ରଖିବାର ସ୍ୱାଭାବିକ ପ୍ରବୃତ୍ତି ଏମାନଙ୍କୁ ନୂତନ ପରିସ୍ଥିତି ସଙ୍ଗରେ ହଠାତ୍ ସହଯୋଗ କରିବାରେ ବାଧା ଦେବାକୁ ଲାଗିଲା । ତେଣୁ ଏହି ସଂହତି ଓ ସେମାନଙ୍କ ଅନ୍ତର୍ଭୁକ୍ତ ଖଣ୍ଡ ଉପଖଣ୍ଡ ଗୁଡ଼ିକ ନିଜ ନିଜ ପରିସ୍ଥିତି ସଙ୍ଗରେ ସହଯୋଗ କରି ନ ପାରିବାରୁ ଏବଂ ପରିବର୍ତ୍ତନର ଅନୁଗାମିନୀ ଯେଉଁ ନୂତନ ଭାବଧାରା ସମାଜରେ ପ୍ରବେଶ କରିଥିଲା ତାହା ଗ୍ରହଣ କରିବାକୁ ପରାଙ୍ମୁଖ ଥିବାରୁ ସେମାନଙ୍କୁ ବହୁ ଦୁଃଖ ଓ ଦୁର୍ବିପାକ ସହ୍ୟ କରିବାକୁ ପଡ଼ିଥିଲା । ବାହ୍ୟ ବିପଦ ଓ ସମୟର ଦାବୀଯୋଗୁଁ ଆଧିପତ୍ୟ ଓ ସମସ୍ତ ପ୍ରକାର ଶାସନ ଶକ୍ତି ଓ ସାମର୍ଥ୍ୟ କୌଣସି ବୃହତ୍ତର ସଂହତି ଦ୍ୱାରା କେନ୍ଦ୍ରୀଭୂତ ହୋଇ ସର୍ବସାଧାରଣଙ୍କ ରକ୍ଷା ପାଇଁ ବ୍ୟବହାର କରିବା ଆବଶ୍ୟକ ହୋଇଥିଲା ଏବଂ ଯେତେବେଳେ ପର୍ଯ୍ୟନ୍ତ ତାହା ସଂପନ୍ନ ହୋଇ ନ ଥିଲା ବାହ୍ୟ ଶତ୍ରୁର ଆକ୍ରମଣ ଓ ଲୁଣ୍ଠନ ଦ୍ୱାରା ସ୍ୱାଭାବିକ ବିକାଶ ଧାରାରେ ନାନା ପ୍ରକାର ବିଶୃଙ୍ଖଳା ଘଟାଇଥିଲା । ଶାସନ କ୍ଷେତ୍ରରେ ଆବଶ୍ୟକ ପଡ଼ିବାରୁ ମୁସଲମାନ ରାଜତ୍ୱର କୌଣସି ସମୟରେ ଅତି ସ୍ୱାଭାବିକ ଭାବରେ

ନିମ୍ନ ସ୍ତରରୁ କେନ୍ଦ୍ରଶକ୍ତି ଗଠନର ପ୍ରେରଣା ପ୍ରଥମେ ଆସିଥିବା ଅନୁମିତ ହୁଏ । ଏଥିପୂର୍ବେ ସୂର୍ଯ୍ୟବଂଶୀ, ଚୌର, ଗୁପ୍ତ ଓ ଅବଶେଷହୀନ ରାଜାମାନଙ୍କ ମଧ୍ୟରୁ କେହି କେହି ଉଚ୍ଚାଭିଳାଷ ଦ୍ୱାରା ଚାଳିତ ହୋଇ କେନ୍ଦ୍ର ଶକ୍ତି ଗଠନ କରିବା ଦିଗରେ ଯେଉଁ ଉଦ୍ୟମ କରିଥିଲେ ତା'ଠାରୁ ଏହା ସମ୍ପୂର୍ଣ୍ଣ ପୃଥକ୍ । ପରିଶେଷରେ ଏହି ପ୍ରେରଣା ହେତୁ ସାଧାରଣ ରାଜ୍ୟରକ୍ଷା ଉଦ୍ଦେଶ୍ୟରେ ଅଠରଗଡ଼ ସମ୍ମିଳିତ ରାଜ୍ୟସଂଘ ଗଠିତ ହେଲା; ଏବଂ ତାହା ସମ୍ପୃକ୍ତ ରାଜ୍ୟଗୁଡ଼ିକର ସ୍ୱେଚ୍ଛାକୃତ ସହଯୋଗ ଓ ସ୍ୱ-ପ୍ରଣୋଦିତ କେନ୍ଦ୍ରାଧିପତ୍ୟ ସ୍ଥାପନ ପ୍ରଚେଷ୍ଟାର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିଲା ।

## ରାଜ୍ୟ ସଂଗଠନ :—

କୋଶଳର ହୃଦୟ ସ୍ୱରୂପ ପ୍ରାଚୀନ ପାଟଣା ଆଧୁନିକ ପାଟଣାଠାରୁ ପୃଥକ୍ । ତାହା ତେଲନଦୀ ଠାରୁ ମହାନଦୀର ଅପରପାର୍ଶ୍ୱ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଏବଂ ଆଧୁନିକ ପାଟଣା, ସୋନପୁର (ତେଲନଦୀର ପଶ୍ଚିମାଂଶ) ସମ୍ବଲପୁର ବୋଡ଼ାସମ୍ବର, ଝଡ଼ିଅଲ, ଫୁଲଝର, ଦେଓଲି ଓ ବିନ୍ଦ୍ରାନୁଆଗଡ ଦ୍ୱାରା ଗଠିତ ହୋଇଥିଲା । ଏହି ଅଞ୍ଚଳରେହିଁ କୁଶ ଓ ତାଙ୍କ ପରବର୍ତ୍ତୀ ଅନ୍ୟାନ୍ୟ ସୂର୍ଯ୍ୟବଂଶୀୟ ରାଜାମାନଙ୍କର ରାଜଧାନୀ ବିଦ୍ୟମାନ ଥିଲା । ଏହି ଅଞ୍ଚଳରେହିଁ କୋଶଳ-ଗୁପ୍ତବଂଶୀୟ ନୃପତିଗଣ ଶକ୍ତିଶାଳୀ ହୋଇଥିଲେ ଏବଂ ସେମାନଙ୍କ ରାଜ୍ୟର ସୀମା ବିସ୍ତାର କରି ପ୍ରାଚୀନ ପାଟଣାନ୍ତର୍ଗତ ଯଯାତି ନଗର, ବିନୀତପୁର, ସୁବର୍ଣ୍ଣପୁର ପ୍ରଭୃତି ବିଜୟ ସ୍କନ୍ଧାବାରରୁ ସେମାନଙ୍କ ପ୍ରଦତ୍ତ ତାମ୍ରଶାସନ ଗୁଡ଼ିକ ପ୍ରଦାନ କରିଥିଲେ । କୋଶଳ ଗୁପ୍ତବଂଶର ପତନ ପରେ ଗଙ୍ଗବଂଶୀୟ କେତେଜଣ ରାଜା ଅଳ୍ପ ସମୟ ପର୍ଯ୍ୟନ୍ତ ଏଠାରେ ରାଜତ୍ୱ କରିଥିଲେ । କିନ୍ତୁ ତତ୍ପରେ ପାଟଣା ପୁନର୍ବାର ଭାଗ ପୂର୍ବ ଅଠଗଡ଼ରେ ପରିଣତ ହେଲା ଏବଂ ପ୍ରତ୍ୟେକ ଗଡ ଜଣେ ମଲ୍ଲିକଙ୍କ ଅଧୀନରେ ଥିଲା । ଦ୍ୱାଦଶ ଶତାବ୍ଦୀର ଶେଷଭାଗରେ ଏହି ଅଠଗଡ ମଧ୍ୟରେ ସମ୍ମିଳନର ପ୍ରୟୋଜନୀୟତା ଓ କେନ୍ଦ୍ରଶକ୍ତି ଗଠନର ପ୍ରେରଣା ପୁନର୍ବାର ଅନୁଭୂତ ହୋଇଥିବା ଜଣାଯାଏ । ତେଣୁ ଅଠଗଡ଼ଯାକ କୌଣସି ପ୍ରକାରେ ଏକାଠି ମିଶାଇ ଏକକ ଶାସନ କରିବାର ଗୋଟିଏ ବିଶିଷ୍ଟ ଉପାୟ ଅବଲମ୍ବନ କରାଗଲା ଏବଂ ସମ୍ମିଳିତ ପ୍ରଭୁତ୍ୱର ପ୍ରତୀକ ସ୍ୱରୂପ ଗୋଟିଏ ସୁନାର ଲେମ୍ବୁ ସିଂହାସନରେ ସ୍ଥାପନ କରି ଅଠମଲ୍ଲିକଯାକ ପାଳି ଅନୁସାରେ ପ୍ରତ୍ୟେକେ ଦିନେ

ଲେଖାଏଁ ପାଟଣା ରାଜ୍ୟ ଶାସନ କରିଥିଲେ ... ଏହି ଶାସନ ଦ୍ୱାରା ସଫଳ ହୋଇ ପାରୁନଥିଲା ଏବଂ ... ପାଟଣା — ଚୌହାନ ବଂଶର ପ୍ରତିଷ୍ଠାତା ରମାଇ ଦେବ ଅଠଗଡ଼ିଆଙ୍କର ଶାସନ କ୍ଷମତା ନିଜ ହାତକୁ ନେଇ ସେ ଗୁଡ଼ିକୁ ଏକତ୍ରିତ କଲେ ଓ ପାଟଣା ରାଜ୍ୟ ଗଠନ କଲେ । ସେ ସମୟରେ ଲୋକେ ଯେଉଁ ଅଭାବ ଅନୁଭବ କରୁଥିଲେ ତାହା ସେ ପୂରଣ କରି ପାରିଥିବାରୁ ସେମାନେ ତାଙ୍କୁ ଆନନ୍ଦରେ ନିଜର ରାଜାରୂପେ ଗ୍ରହଣ କଲେ । ପାଟଣାରେ ଯେପରି ମଲ୍ଲିକ ମାନଙ୍କ ଦ୍ୱାରା ଗଡ଼ ସବୁର ସମ୍ମିଳନ ପ୍ରଚେଷ୍ଟା ହୋଇଥିଲା, ସେପରି ଚେଷ୍ଟା ଅନ୍ୟତ୍ର ହୋଇଥିବା ଜଣା ନ ଥିଲେ ମଧ୍ୟ କୋଶଳାନ୍ତର୍ଗତ ଅନ୍ୟାନ୍ୟ ରାଜ୍ୟଗୁଡ଼ିକ ବିଭିନ୍ନ ଅଞ୍ଚଳସ୍ଥ ସ୍ଥାନୀୟ ଅଭାବ ଅନୁସାରେ ଗତ କେତେ ଶତାବ୍ଦୀର ବିଭିନ୍ନ ସମୟରେ ଜଣେ ଜଣେ ରାଜାଙ୍କ ଅଧୀନରେ ସମ୍ମିଳିତ ହୋଇଥିବା ଜଣାପଡେ ।

## ଅଠରଗଡ଼ ରାଜ୍ୟସଂଘ :—

ସୂର୍ଯ୍ୟବଂଶୀ, ବୀର ଓ କୋଶଳ-ଗୁପ୍ତବଂଶୀୟ ରାଜାମାନଙ୍କ ଶାସନକାଳରେ କୋଶଳର ଭୂଦୟୂତ୍ପତ୍ତି ପ୍ରାଚୀନ ପାଟଣାରୁ ଯେପରି ଏଥିପୂର୍ବେ ଏକତ୍ରୀକରଣର ଉଦ୍ୟମ ହୋଇଥିଲା, ଚୌହାନ ରାଜାମାନଙ୍କ ରାଜତ୍ୱରେ ମଧ୍ୟ ସେହିପରି ପ୍ରଚେଷ୍ଟା ନୂତନ ଭାବରେ ପାଟଣାରୁ ଆରମ୍ଭ ହୋଇଥିଲା; ଏବଂ ପ୍ରଥମ ଶତାବ୍ଦୀ ମଧ୍ୟକାଳ ମଧ୍ୟରେ କେବଳ ଯେ କୋଶଳର ଏକତା ସଙ୍ଗଠିତ ହୋଇଥିଲା ତାହା ନୁହେଁ, ଅନ୍ୟାନ୍ୟ ଅଞ୍ଚଳ ଗୁଡ଼ିକ ମଧ୍ୟ ଏହି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିବାରୁ ତାହା ୭୨ ଗୋଟି ରାଜ୍ୟର ସମଷ୍ଟିରେ ପରିଣତ ହୋଇ ଆୟତନରେ ପୂର୍ବବର୍ତ୍ତୀ ସାମ୍ରାଜ୍ୟ ଗୁଡ଼ିକର ସମକକ୍ଷ ହୋଇ ପାରିଥିଲା । କିନ୍ତୁ ଏହି ଦିଗରେ କରା ଯାଇଥିବା ପୂର୍ବବର୍ତ୍ତୀ ଉଦ୍ୟମଭଳି ଏହା ମଧ୍ୟ ଅସ୍ୱାଭାବିକ ଥିଲା; କାରଣ ସମଷ୍ଟିଗତ ରାଜ୍ୟ ଗୁଡ଼ିକର ଆବଶ୍ୟକତା ଦୃଷ୍ଟିରୁ ନ ହୋଇ ଏହା ସାମ୍ରାଜ୍ୟଲୋଭୀ କୌଣସି କୌଣସି ରାଜାଙ୍କ ଉଚ୍ଚାଭିଳାଷ ଫଳରୁ ହୋଇଥିଲା । ତେଣୁ ପୂର୍ବବର୍ତ୍ତୀ ସାମ୍ରାଜ୍ୟ ଗୁଡ଼ିକ ପରି ଏହା ମଧ୍ୟ ଯଥା ସମୟରେ କ୍ଷୁଦ୍ରାୟତନରେ ପର୍ଯ୍ୟବସିତ ହୋଇଥିଲା । କିନ୍ତୁ ଏହା ପୂର୍ଣ୍ଣଭାବରେ ଛିନ୍ନ ବିଚ୍ଛିନ୍ନ ହେବା ପୂର୍ବରୁ ବୈଦେଶିକ ଆକ୍ରମଣର ବିପଦ ଓ ରାଜ୍ୟରକ୍ଷା ସହାୟତା ଦୃଷ୍ଟିରୁ ଓ ସମସ୍ତ ପ୍ରକାର ଶାସନଶକ୍ତି ଓ ସାମର୍ଥ୍ୟ କେନ୍ଦ୍ରୀଭୂତ-କରିବାର ପ୍ରୟୋଜନୀୟତା କ୍ରମଶଃ ଭାବେ ଅନୁଭୂତ ହେଲା । ଏହି

ସ୍ୱାଭାବିକ ପ୍ରେରଣା ଫଳରେ ପାଟଣାର ନେତୃତ୍ୱରେ ଅଠରଗଡ଼ ରାଷ୍ଟ୍ରସଂଘ ଗଠିତ ହେଲା । ପାଟଣା ଥିଲା ଏହା ସଂଘର କେନ୍ଦ୍ର । ପରେ ପାଟଣାର ଜଣେ ରାଜା ତାଙ୍କ ସାନଭାଇଙ୍କୁ ସମ୍ବଲପୁର ଅଞ୍ଚଳ ଭାଗ ଦେଇଦେବାରୁ ପାଟଣା ଦୁଇ-ଭାଗରେ ବିଭକ୍ତ ହେଲା ଏବଂ ଅଠରଗଡ଼ର ନେତୃତ୍ୱ ମଧ୍ୟ କନିଷ୍ଠ ସମ୍ବଲପୁର ଶାଖା ସଙ୍ଗରେ ବିଭକ୍ତ ହେଲା । ଏହି ରାଷ୍ଟ୍ରସଂଘ ୧୮୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରହିଥିଲା ଏବଂ ଦକ୍ଷିଣ-ପୂର୍ବାଞ୍ଚଳରେ ଥିବା କଲାହାଣ୍ଡି ଓ ବସ୍ତର ଛଡ଼ା ସମଗ୍ର କୋଶଳ ଏହାର ଅନ୍ତର୍ଭୁକ୍ତ ଥିଲା ।

## ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ଓ କେନ୍ଦ୍ରୀଭୂତକରଣ :—

କୋଶଳ ଇତିହାସର ପ୍ରତ୍ୟେକ ଯୁଗରେ ଏହା ପରିଲକ୍ଷିତ ହୁଏ ଯେ ବିଭିନ୍ନ ଖଣ୍ଡ ଓ ଉପଖଣ୍ଡମାନଙ୍କର ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ଯଥେଷ୍ଟ ପରିମାଣରେ ରହିଥିଲା ଓ ସେମାନଙ୍କ ନିଜ ନିଜ ସ୍ଥାନୀୟ ସ୍ୱାଧୀନତା ବଜାୟ ରଖିବା ସକାଶେ ସେମାନେ ସର୍ବଦା ଜାଗ୍ରତ ଥିଲେ । ଅନେକ ବିଷୟରେ ଗ୍ରାମଗୁଡ଼ିକ ସ୍ୱାବଲମ୍ବନଶୀଳ ଥିଲେ ଓ ନିଜ ନିଜ ସ୍ଥାନୀୟ ସ୍ୱାଧୀନତା ଅନେକ ପରିମାଣରେ ରକ୍ଷା କରିଥିଲେ । ସେ ସମୟରେ ଅଭାବର ସଂଖ୍ୟା ଖୁବ୍ କମ୍ ଥିବାରୁ ତାହା ସମ୍ଭବ ହୋଇ ପାରିଥିଲା । ବୃହତ୍ତର ଶାସନ ସଂହତି ଗୁଡ଼ିକର କର୍ତ୍ତବ୍ୟ ମଧ୍ୟ ଖୁବ୍ ସାଧାରଣ ରକମର ଥିବାରୁ ସେ ଗୁଡ଼ିକ ବେଶୀ କ୍ଷମତା ଆବଶ୍ୟକ କରୁ ନ ଥିଲେ । କେବଳ ବାହ୍ୟ-ଶତ୍ରୁର ଆକ୍ରମଣରୁ ରାଜ୍ୟ-ରକ୍ଷା କରିବା ସକାଶେ ରାଜ୍ୟ-ସଂହତି ଗୁଡ଼ିକ ଗଠିତ ହେଉଥିଲା । କିନ୍ତୁ ତାହେଲେ ମଧ୍ୟ କ୍ଷୁଦ୍ରତର ସଂହତି ସବୁର ସ୍ଥାନୀୟ ସ୍ୱାଧୀନତାରେ ପ୍ରାୟ ହସ୍ତକ୍ଷେପ କରା ଯାଉ ନ-ଥିଲା । ସାମ୍ରାଜ୍ୟ ଗଠିତ ହେବା ପରେ ମଧ୍ୟ ସମଷ୍ଟିଗତ ରାଜ୍ୟ ଗୁଡ଼ିକର ପ୍ରାଦେଶିକ ସ୍ୱାତନ୍ତ୍ର୍ୟ କୌଣସି ପ୍ରକାରେ କ୍ଷୁଣ୍ଣ ହୋଇ ନ ଥିଲା ଏବଂ କେନ୍ଦ୍ରଶକ୍ତି କେବଳ ସମୂହ ରାଜ୍ୟରକ୍ଷା ସକାଶେ କିମ୍ବା ଶତ୍ରୁ ରାଜ୍ୟ ଆକ୍ରମଣ କଲେ ଯେଉଁ ଯୁଦ୍ଧ କରୁଥିଲେ ସେଥିପାଇଁ ସଂଘବଦ୍ଧ ରାଜାମାନଙ୍କଠାରୁ ସାମାନ୍ୟ କର ଗ୍ରହଣ କରି ଏବଂ ସୈନ୍ୟ ସାହାଯ୍ୟ ପାଇ ସନ୍ତୁଷ୍ଟ ରହୁଥିଲେ । ଅଠରଗଡ଼ ରାଜ୍ୟସଂଘରେ ମଧ୍ୟ କେନ୍ଦ୍ରଶକ୍ତି ସମଷ୍ଟିଗତ ରାଜ୍ୟମାନଙ୍କଠାରୁ ସର୍ବସାଧାରଣଙ୍କ ଉପକାର ପାଇଁ ଯେଉଁ ତ୍ୟାଗ କିମ୍ବା ପ୍ରଭୁତାର କେନ୍ଦ୍ରୀଭୂତକରଣ ଦାବୀ କରୁଥିଲେ ତାହା କେବଳ କେନ୍ଦ୍ରଶକ୍ତିକୁ କର ଦେବାରେ ଓ ସମୂହ ରାଜ୍ୟରକ୍ଷା ସକାଶେ ସୈନ୍ୟ

ଯୋଗାଇବାରେ ନିହିତ ଥିଲା । ଅନ୍ୟାନ୍ୟ ବିଷୟରେ ସମଷ୍ଟିଗତ ରାଜ୍ୟଗୁଡିକ ଓ ତଦାସ୍ଥ ଖଣ୍ଡ ଉପଖଣ୍ଡ ମାନଙ୍କର ପ୍ରାଦେଶିକ ସ୍ୱାଧୀନତା ଅକ୍ଷୁଣ୍ଣ ଥିଲା । କିନ୍ତୁ ତାହାହେଲେ ମଧ୍ୟ ସମଗ୍ର ଅଞ୍ଚଳର ଅଧିବାସୀଗଣଙ୍କ ମଧ୍ୟରେ ଯେଉଁ କୃଷ୍ଟିଗତ ସାମଞ୍ଜସ୍ୟ ବିଦ୍ୟମାନ ଥିଲା ତାହା କୌଣସିପ୍ରକାରେ କ୍ଷୁଣ୍ଣ ହୋଇ ନ ଥିଲା । ଏଥିରୁ ମଧ୍ୟ ଏହା ସ୍ପଷ୍ଟଭାବରେ ପ୍ରତୀୟମାନ ହୁଏ ଯେ କୋଶଳର ଗଠନର ଆବଶ୍ୟକତା ସ୍ୱାଭାବିକ ଭାବରେ କ୍ରମେ କ୍ରମେ ନିମ୍ନସ୍ତରରୁ ବୃଦ୍ଧି ପାଇ ସମଷ୍ଟିଗତ ସମଗ୍ର ରାଜ୍ୟରକ୍ଷା ଉଦ୍ଦେଶ୍ୟରେ ଅଠରଗଡ଼ ରାଷ୍ଟ୍ରସଂଘରେ ପରିଣତ ହୋଇଥିଲା ।

## କୋଶଳ ଅଞ୍ଚଳସ୍ଥ ବିଭିନ୍ନ ରାଜ୍ୟର ଗଠନ :—

କୋଶଳର ବିଭିନ୍ନ ସଂସ୍ଥାରେ ଶାସନପ୍ରଣାଳୀ ସମାଜର ନିମ୍ନସ୍ତରରୁ ସ୍ୱାଭାବିକ ଭାବରେ ବିକାଶ ଲାଭ କରିଥିଲା ଏବଂ ତାହା ଆକାରତଃ ଚିନ୍ତୁ-ପ୍ରଧାନ ଥିଲା । ଗୋଷ୍ଠୀଗତ ଭିତ୍ତି ଉପରେ ପ୍ରତିଷ୍ଠିତ ଥିବାରୁ ତାହା ଗଣ-ତନ୍ତ୍ର-ମୂଳକ ମଧ୍ୟ ଥିଲା । ହିନ୍ଦୁ ଓ ରାଜପୁତ ରାଜାଗଣ କୋଶଳର ବିଭିନ୍ନ ଅଞ୍ଚଳ ଏକତ୍ରିତ କରି ରାଜ୍ୟ ଗଠନ କଲାବେଳେ ସେମାନେ ପ୍ରଚଳିତ ପ୍ରଣାଳୀ ଅବଲମ୍ବନ କଲେ ଏବଂ ତାହାର ଫଳରେ "ପୂର୍ବ ପ୍ରଚଳିତ ଜାତୀୟ ଶାସନର ସମନ୍ୱିତ ସାମନ୍ତ ପ୍ରଥା ପ୍ରତିଷ୍ଠିତ ହେଲା ।" ( C. V. Wills' Territorial system of the Rajput kingdoms of Medieval Chhatisgarh ) "ସ୍ୱାଭାବିକ ଓ ଦେଶଜ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇ ପ୍ରୋକ୍ତ ପ୍ରଣାଳୀ ପ୍ରଥମତଃ କାର୍ଯ୍ୟରେ ଓ ନିୟମରେ ଅତି ସରଳ ଓ ଶୃଙ୍ଖଳାବଦ୍ଧ ଥିଲା " Ibid । ହିନ୍ଦୁ ରାଜାମାନଙ୍କ ଆଦର୍ଶ ଓ ସାମନ୍ତ ପ୍ରଥାର ଅନ୍ୟ ଏକ ବିଶିଷ୍ଟ ପରିବର୍ତ୍ତନ, ଯାହା ରାଜାମାନଙ୍କର ନିରଙ୍କୁଶ ଶାସନାଧିକାର ଅକ୍ଷୁଣ୍ଣ ରଖି ଅଧୀନ ଶାସକଗଣଙ୍କୁ ଶାସନଗତ ସୁବିଧା ପାଇଁ କ୍ଷମତା ପ୍ରଦାନ କରେ ଏବଂ ଯାହା ଆମେମାନେ ଏହି କୋଶଳ ପ୍ରଦେଶରେ ଦେଖିବାକୁ ପାଉଁ, ତାହା ହିନ୍ଦୁ ଓ ଆଦିମ ଜାତୀୟ ଶାସନ-ପ୍ରଣାଳୀର ମଧୁର ସଂମିଶ୍ରଣରେ ରାଜତନ୍ତ୍ର ଓ ଗଣତନ୍ତ୍ରର ଅପୂର୍ବ ସମାବେଶ । ଯେଣୁ ସାମନ୍ତପ୍ରଥା ପ୍ରଚଳିତ ଥିଲେ ମଧ୍ୟ ତାହା ଗୋଷ୍ଠୀଗତ ଗଣତାନ୍ତ୍ରିକ ପ୍ରଭାବ ଦ୍ୱାରା ସର୍ବଦା ବାଧାପ୍ରାପ୍ତ ହେଉଥିଲା । ଗୌନ୍ତିଆ, ଦାଉ, ଗଡ଼ତିଆ, ଦେୱାନଠାରୁ ରାଜା ପର୍ଯ୍ୟନ୍ତ ପ୍ରତ୍ୟେକଙ୍କ ସାମନ୍ତବାଦ ଜନିତ କର୍ତ୍ତୃତ୍ୱ ପ୍ରଚଳିତ ରୀତି ଓ ପଞ୍ଚାୟତ

ପ୍ରଥାଦ୍ୱାରା ପଦେ ପଦେ ବାଧାପ୍ରାପ୍ତ ହେଉଥିଲା । "ଛତିଶଗଡ଼ର ରାଜପୁତ ରାଜତ୍ୱ କାଳରେ ଏହି ଗଣତାନ୍ତ୍ରିକ ଉପାଦାନ ଶାସନ ତନ୍ତ୍ରର ପ୍ରତ୍ୟେକ ତନ୍ତ୍ରୀକୁ ରଞ୍ଜିତ କରି ରଖିଥିଲା । ରାଜାଙ୍କଠାରୁ ଆରମ୍ଭ କରି ଅଧସ୍ତନ କ୍ଷମତାପନ୍ନ ପ୍ରତ୍ୟେକ ବ୍ୟକ୍ତି ସେପରି ସୀମାବଦ୍ଧ କ୍ଷେତ୍ରରେ ନିଜ ନିଜର ପ୍ରତ୍ୟକ୍ଷ କ୍ଷମତା କାର୍ଯ୍ୟରେ ପରିଣତ କରି ସନ୍ତୁଷ୍ଟ ରହୁଥିଲେ ସେଥିରୁ ଜଣାଯାଏ ଯେ ସମାଜର ନିମ୍ନସ୍ତର ପ୍ରତି ସେମାନେ ସମ୍ମାନ ଦେଖାଇବାକୁ ବାଧ୍ୟ ହେଉଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ରାଜନୈତିକ ଶକ୍ତି ଗୁଡ଼ିକ ମଧ୍ୟରେ କିଛି ଗୋଟାଏ ସମନ୍ୱୟ ଓ ସମତା ବିଦ୍ୟମାନ ରହି ବ୍ୟକ୍ତିଗତ କ୍ଷମତା ହ୍ରାସ କରି ରଖିଥିଲା । ଦଳଗତ ଭାବ ପ୍ରକାଶହିଁ ଏହି ସୀମାବଦ୍ଧତାର ଏକମାତ୍ର କାରଣ" ( Ibid ) । ସ୍ଥାନୀୟ କାର୍ଯ୍ୟାବଳୀରେ ଜନସାଧାରଣ ଯେଉଁ ସହଯୋଗ କରୁଥିଲେ ତାହା ବାସ୍ତବ ଆକାର ଧାରଣ କରିଥିଲା ଏବଂ ଗ୍ରାମସ୍ତରରେ ପଞ୍ଚାୟତ ପ୍ରଥା କ୍ଷମତାପନ୍ନ ବ୍ୟକ୍ତିଗଣଙ୍କ କ୍ଷମତାକୁ ସୀମାବଦ୍ଧ କରି ରଖିଥିଲା । ତାଲୁକ ଓ ଅନ୍ୟାନ୍ୟ ଭୂମିର ବିଭାଗ ପାଇଁ ମଧ୍ୟ ପଞ୍ଚାୟତ ରହୁଥିଲା । ପ୍ରହ୍ଲାଦ-ଦୁବେଙ୍କ ପ୍ରଣୀତ "ଜୟଚନ୍ଦ୍ରିକା" କାବ୍ୟରୁ ଜଣାପଡ଼େ ଯେ ସମ୍ବଲପୁରର ଜବାହିର ମହାରାଜା ଓ ତାଙ୍କ ସ୍ଥାନରେ ଦଳନ୍ଦୁଙ୍କ ସିଂହାସନରେ ଆରୋହଣ କରିଥିବା ମହାରାଜାଙ୍କ ଦାବୀ ନିରୂପଣ କରିବା ସକାଶେ ପଞ୍ଚାୟତ ସଭ୍ୟ ଓ ଜମିଦାର ମାନଙ୍କୁ ଡକା ଯାଇଥିଲା । ବସ୍ତର ରାଜ୍ୟରେ ପାଞ୍ଚୋଟି ବଡ ସଭାର ଓ କୃଷକମାନଙ୍କ ପ୍ରଧାନମାନେ ରାଜାଙ୍କ ଅଭିଷେକ ଉପଲକ୍ଷେ ଜମା ହୋଇ କର୍ମଚାରିଗଣଙ୍କ ଅତ୍ୟାଚାରରେ ପ୍ରତିବାଦ କରିଥିଲେ ଏବଂ ଆଦେଶ ଦେଇଥିଲେ ଯେ ଏପରି ଅସାଧାରଣ କର କେବଳ ରାଜ୍ୟର ସମ୍ପତ୍ତି ସଂପନ୍ନ ବ୍ୟକ୍ତିଠାରୁ ଅସୁଲ କରାଯିବ । କୋଶଳ ରାଜ୍ୟର ବିକାଶର ଅନ୍ୟ ଏକ ପ୍ରଧାନ ବିଶେଷତ୍ୱ ଏହି ଯେ ରାଜଶକ୍ତି ଈଶ୍ୱରଦତ୍ତ, ନିରଙ୍କୁଶ ଶାସନାଧିକାର ଏବଂ ରାଜ୍ୟଗୁଡ଼ିକ ଶାସକମାନଙ୍କର ନିଜର ବ୍ୟକ୍ତିଗତ ସଂପତ୍ତି — ଏହି ଭାବଗୁଡ଼ିକ ସମାଜ ଓ ଶାସନ ପ୍ରଣାଳୀକୁ ବିକୃତ କରି ପାରି ନ ଥିଲା । ଶାସକ ଓ ଶାସିତମାନଙ୍କ ସ୍ୱାର୍ଥର ଏକତା ଏବଂ ପଞ୍ଚାୟତମାନଙ୍କ ମଧ୍ୟବର୍ତ୍ତିତାରେ ଶାସନ କାର୍ଯ୍ୟରେ ଜନସାଧାରଣଙ୍କ ସହଯୋଗ ଯେ ନିରାଟ ସତ୍ୟକଥା ଏଥିରେ ସନ୍ଦେହର ଅବକାଶ ନାହିଁ । ସି. ୟୁ. ଉଇଲସ୍‌ଙ୍କ C. U. Wills ଭାଷାରେ "କନ୍ଦୁ ରାଜା ପରିବାରରେ ସ୍ୱୀୟ ସ୍ୱାତନ୍ତ୍ର୍ୟ ଓ ମର୍ଯ୍ୟାଦା ରକ୍ଷାପାଇଁ

ଯେତକ ଭୂମି ଆବଶ୍ୟକ ପଡୁଥିଲା ସବୁବେଳେ ସେ ସେତିକ ଭୂମି ନିଜ ହାତରେ ରଖି ପାରୁଥିଲେ । " ଏଥିରୁ ସ୍ପଷ୍ଟ ଜଣାପଡେ ଯେ ରାଜା ମଧ୍ୟ ସ୍ୱେଚ୍ଛାଚାରୀ ଶାସକ ନ ଥିଲେ । ସେ ଆପଣାକୁ ସମକ୍ଷମତାପନ୍ନ ବ୍ୟକ୍ତି ମାନଙ୍କ ମଧ୍ୟରେ ମୁଖ୍ୟ ବା ପ୍ରଧାନ ମନେ କରୁଥିଲେ ଏବଂ ବସ୍ତୁତଃ ମୁଖ୍ୟ ଶାସକ, ସମାଜପତି ଓ ଧର୍ମଗୁରୁ ହେଲେ ମଧ୍ୟ ସେ ନିଜ ପ୍ରଜାଗଣଙ୍କ ପରଂପରାଗତ ରୀତିନୀତି ପ୍ରତି ଯଥେଷ୍ଟ ସମ୍ମାନ ଦେଖାଉଥିଲେ, କାରଣ ସେ ମନେ କରୁଥିଲେ ଯେ ରାଜପଦର ବ୍ୟକ୍ତିଗତ କ୍ଷମତା ଅକ୍ଷୁଣ୍ଣ ରଖିବା ଓ ବୃଦ୍ଧି କରିବା ଅପେକ୍ଷା ପ୍ରଜାଗଣଙ୍କ ପରଂପରାଗତ ଅଧିକାର ରକ୍ଷାକରି ସେମାନଙ୍କ ସୁଖ ବିଧାନ କରିବା ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ।" ଉପର୍ଯ୍ୟୁକ୍ତ ଶାସନ ପ୍ରଣାଳୀ ବହୁ ଶତାବ୍ଦୀ ପର୍ଯ୍ୟନ୍ତ କୋଶଳରେ ପ୍ରଚଳିତ ଥିଲା ଏବଂ ପରବର୍ତ୍ତୀ ସମୟରେ କେତେକ କୃତ୍ରିମ କାରଣବଶତଃ ବାଧାପ୍ରାପ୍ତ ହେବାରୁ ତାହା କେତେକାଂଶରେ ପରିବର୍ତ୍ତିତ ହୋଇଥିଲା । କିନ୍ତୁ ଏବେ ମଧ୍ୟ କୋଶଳର ସାମାଜିକ ଗଠନରେ ତାହାର ଚିହ୍ନ ପରିଲକ୍ଷିତ ହୁଏ

## କୃତ୍ରିମ କାରଣରୁ ସ୍ୱାଭାବିକ ବୃଦ୍ଧିର ଗତିରୋଧ :—

୧୮୦୩ ଖ୍ରୀଷ୍ଟାବ୍ଦରେ ଅଠରଗଡ଼ ସମନ୍ୱିତ ରାଜ୍ୟ [illegible] କାରଙ୍କ ସହ ସଂବନ୍ଧ ସ୍ଥାପନ କଲେ । କିନ୍ତୁ ପୂର୍ବରୁ ଅନ୍ୟପ୍ରକାର ଚୁକ୍ତି ଥିଲେ ମଧ୍ୟ ଇଂରାଜ ସରକାର ତାକୁ ଲଂଘନ କରି ସାମ୍ରାଜ୍ୟବାଦ ନୀତି ଅନୁସରଣରେ ୧୮୦୬ ଖ୍ରୀଷ୍ଟାବ୍ଦରେ ଏହି ସବୁ ରାଜ୍ୟର ସ୍ୱାର୍ଥରେ ଜଳାଞ୍ଜଳି ଦେଇ ସେ ଗୁଡ଼ିକୁ ଭୋନ୍‌ସଲାଙ୍କୁ ଫେରାଇଦେଲେ । ୧୮୧୮ ଖ୍ରୀଷ୍ଟାବ୍ଦରେ ଇଂରାଜ ସରକାର ପୁ[illegible] ର ଭୋନ୍‌ସଲାଙ୍କଠାରୁ ଏହି ରାଜ୍ୟ ଗୁଡ଼ିକ ଛଡ଼ାଇ ଆଣି ଅଠରଗଡ଼ ରାଷ୍ଟ୍ର [illegible] ଭାଙ୍ଗିଦେଲେ । ଯେଉଁ କେନ୍ଦ୍ରିଭୂତ ଶାସନକଳ ଗଠନର ସ୍ୱାଭାବି[illegible] ରାଷ୍ଟ୍ରସଂଘ ଗଠନରେ ପ୍ରକାଶ ପାଉଥିଲା, ତାହାର ଅଗ୍ରଗତି [illegible] ସମ୍ମିଳନର କଳ୍ୟାଣ [illegible] କୃତ୍ରିମ କା[illegible] ବଶତଃ ବାଧାପ୍ରାପ୍ତ ହେଲା ।

## ବିବର୍ତ୍ତନ ଧାରାର ନ୍ୟାଯ୍ୟାନୁମୋଦିତ ସିଦ୍ଧାନ୍ତ :—

ଏହା ନିର୍ବିବାଦରେ କୁହାଯାଇ ପାରେ ଯେ ସ୍ୱାଭାବିକ ପ୍ରକ୍ରିୟାରେ ସ୍ୱତଃ ବୃଦ୍ଧି ଲାଭ କରିଥିବାରୁ ବାହ୍ୟପୂର୍ବକ ଛିନ୍ନ ଭିନ୍ନ କରାଯାଇ ନ ଥିଲେ ସେହି ଅଠରଗଡ଼ ରାଷ୍ଟ୍ରସଂଘ ସ୍ଥାୟୀ ହୋଇ ପାରିଥାନ୍ତା । ପକ୍ଷାନ୍ତରେ ଏହା ଗୋଟିଏ ବାସ୍ତବ

ରାଜ୍ୟସଂଘରେ ପରିଣତ ହୋଇ ପାରିଥାନ୍ତା ଏବଂ ସମୟାନୁକ୍ରମେ ଯେଉଁ ପରିବର୍ତ୍ତନ ଆସିଥାନ୍ତା ତା' ସହିତ ସଙ୍ଗେ ସଙ୍ଗେ ଅଞ୍ଚଳର ବୃଦ୍ଧି ହେବାରୁ ସାଧାରଣ ସ୍ୱାର୍ଥଜଡ଼ିତ ଅନେକ ଅଧିକ ବିଷୟ ମଧ୍ୟ କେନ୍ଦ୍ରୀଭୂତ କରାଯାଇଥାନ୍ତା । ଏହା ମଧ୍ୟ ଖୁବ୍ ସମ୍ଭବ ଯେ ଅନ୍ୟାନ୍ୟ ପଡ଼ୋଶୀ ରାଜ୍ୟ ମଧ୍ୟ ଏହି ରାଷ୍ଟ୍ର-ସଂଘ ଆଡ଼କୁ ଆକର୍ଷିତ ହୋଇଥାନ୍ତେ ଓ ତାହା ଖୁବ୍ ସ୍ୱାଭାବିକ ଉପାୟରେ ଛୋଟ ଛୋଟ ରାଜ୍ୟ ଗୁଡ଼ିକର ଅଭାବ ପୂରଣ କରି ପାରିଥା'ନ୍ତା ।

## କୋଶଳର ଭୟାନକ କ୍ଷତି :—

କୋଶଳ ଗୁରୁତର ଭାବରେ କ୍ଷତଗ୍ରସ୍ତ ହେଲା ପ୍ରଥମରେ ଯେତେବେଳେ ୧୮୨୭ ଖ୍ରୀଷ୍ଟାବ୍ଦରେ ( ୧ ) ବନ୍ଦ୍ରାନୁଆଗଡ଼, ( ୨ ) ଖଡ଼ିଆଳ, ( ୩ ) ବୋଡ଼ା-ସମ୍ବର, ( ୪ ) ଫୁଲଝର ଓ ( ୫ ) ଦେଓଲୀ — ଏହି ପାଞ୍ଚଟି ଜମିଦାରୀ ପାଟଣା ରାଜ୍ୟରୁ ପୃଥକ୍ କରି କୋଶଳର ହୃଦୟକୁ ଦ୍ୱିଖଣ୍ଡିତ କରାଗଲା; ଦ୍ୱିତୀୟତଃ, ୧୮୪୯ ଖ୍ରୀଷ୍ଟାବ୍ଦରେ ଯେତେବେଳେ ସମ୍ବଲପୁର ଷ୍ଟେଟକୁ ମୂଳରାଜ୍ୟ ପାଟଣା-ସଙ୍ଗରେ ମିଶାଇ ନ ଦେଇ ଡେଲହାଉସିଙ୍କ ରାଜ୍ୟ ଦଖଲ ବା ରାଜ୍ୟାପ୍ତି ନୀତି ଅନୁସାରେ ବ୍ରିଟିଶ୍-ସାମ୍ରାଜ୍ୟ-ଭୁକ୍ତ କରାଗଲା; ତୃତୀୟତଃ, ୧୮୬୨ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଉପର୍ଯ୍ୟୁକ୍ତ ପାଞ୍ଚଗୋଟି ଜମିଦାରୀକୁ ପ୍ରତ୍ୟକ୍ଷ ଭାବରେ ବ୍ରିଟିଶ-ଶାସନାଧୀନ କରାଗଲା, ଏବଂ ପରିଶେଷରେ ୧୮୧୮ - ୧୯୦୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଯେତେବେଳେ କୋଶଳର ଅନେକାଂଶ ଛିନ୍ନ ଭିନ୍ନ ହୋଇ ବିଭିନ୍ନ ପ୍ରଦେଶାନ୍ତର୍ଗତ କରାଗଲା । ଏ ସବୁ ନିର୍ଦ୍ଦୟ ବ୍ୟବହାର ଦ୍ୱାରା ସମକୃଷ୍ଟିଗତ ଏକଭାଷାଭାଷୀ ଏବଂ ଧାର୍ମିକତା, ରୀତି, ନୀତି ଓ ଜୀବନଯାପନ ପ୍ରଣାଳୀରେ ସାମଞ୍ଜସ୍ୟ ଥିବା ଏକ ଶ୍ରେଣୀର ଲୋକଙ୍କୁ ସେମାନଙ୍କ ଜ୍ଞାତି କୁଟୁମ୍ବଙ୍କଠାରୁ ଅଲଗା କରି ରଖିଥିଲେ ମଧ୍ୟ କୋଶଳର କୃଷ୍ଟିଗତ ଐକ୍ୟ ଆଜିପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଅଛି ।

## କୋଶଳର ବର୍ତ୍ତମାନ ସମସ୍ୟା :—

୧୮୧୮ ଖ୍ରୀଷ୍ଟାବ୍ଦରେ କୋଶଳର ବୃଦ୍ଧି ଓ ବିକାଶ ଅସ୍ୱାଭାବିକ ହୋଇପଡ଼ିଛି । ଏ ଅଞ୍ଚଳର ଭିନ୍ନ ଭିନ୍ନ ରାଜ୍ୟଗୁଡ଼ିକ ଗୋଟିଏ କୃତ୍ରିମ ବାୟୁମଣ୍ଡଳରେ ଅବସ୍ଥାନ କରି ଆସୁଥିବାରୁ ଗତ ୧୨୫ ବର୍ଷ ମଧ୍ୟରେ ଅନେକ ନୂତନ ସମସ୍ୟା ଓ ନୂତନ ଭାବଧାରା ସମାଜରେ ପ୍ରବେଶ କରିଥିଲେହେଁ ଏହାର ଅନ୍ତର୍ଭେଦୀ ବିଭିନ୍ନ

ଭୂଖଣ୍ଡରେ ସମାନ ବୃଦ୍ଧି ବା ବିକାଶ [illegible] ପ୍ରଦେଶ ମାନଙ୍କରେ ବିବର୍ତ୍ତନ ଧାରାର ଗତି ସର୍ବତୋଭାବେ ରୁଦ୍ଧ ହୋଇଥିବା ଜଣାପଡ଼େ । ତାର ଫଳରେ କୋଶଳ ପ୍ରତିବନ୍ଧ - ବୃଦ୍ଧି ରୂପକ ମୋହାଏ ରୋଗ ଯନ୍ତ୍ରଣା ଭୋଗି ଆସୁଥିବା ପ୍ରତୀୟମାନ ହୁଏ । ଆଧୁନିକ ସମସ୍ୟାନୁବର୍ତ୍ତୀ ଅଭାବ ବୃଦ୍ଧି ସଙ୍ଗେ ସଙ୍ଗେ ଶାସନାନ୍ତର୍ଗତ ବିଭିନ୍ନ ଖଣ୍ଡ - ଉପଖଣ୍ଡ ମଧ୍ୟରେ ଷ୍ଟେଟ - ସ୍ତର ପର୍ଯ୍ୟନ୍ତ ଶାସନ ପ୍ରଣାଳୀରେ ପରିବର୍ତ୍ତନ ଘଟିଛି; କିନ୍ତୁ ବିକେନ୍ଦ୍ରୀକରଣ ପ୍ରକ୍ରିୟାରେ କେବଳ ଷ୍ଟେଟସ୍ତର ପର୍ଯ୍ୟନ୍ତ ପହଞ୍ଚି ଅଛି । କିନ୍ତୁ କୋଶଳ ରାଜ୍ୟରେ କେନ୍ଦ୍ରକ ( Nucleus ) ସ୍ୱରୂପ ଗଠିତ ହୋଇଥିବା ଅଠରଗଡ଼ ରାଷ୍ଟ୍ର ସଂଘ ଆଜିପର୍ଯ୍ୟନ୍ତ ତିଷ୍ଠି ପାରିଥିଲେ ବହୁପୂର୍ବରୁ ଗୋଟିଏ ଉଚ୍ଚତର ଦକ୍ଷ ବିଶିଷ୍ଟ କେନ୍ଦ୍ରଶକ୍ତି ଗଠିତ ହୋଇଥାନ୍ତା ଏବଂ ଆଜିକାଲି ଆମ୍ଭେମାନେ ଯେଉଁ ଜଟିଳ ସମସ୍ୟାର ସମ୍ମୁଖୀନ ହେଉଅଛୁଁ, ସେ ଗୁଡ଼ିକ ଅନେକାଂଶରେ ସହଜରେ ସମାହିତ ହୋଇ ପାରିଥାନ୍ତା । ଅଉ ମଧ୍ୟ ତାର ଫଳରେ ସଂପର୍କୀୟ ସମସ୍ତେ ସୁଖ-ସମୃଦ୍ଧି ଲାଭ କରି ପାରିଥାନ୍ତେ । କିନ୍ତୁ ସେହି ସ୍ୱାଭାବିକ ବିବର୍ତ୍ତନ ଧାରାର ଗତି ବଳପୂର୍ବକ ରୋଧ କରିଦେବା ଯୋଗୁଁ ଅନେକ ନୂତନ ସମସ୍ୟା ଉପୁଜିତ ହୋଇ କୋଶଳର ଦୁର୍ଗତିର ମାତ୍ରା ବଢ଼ାଇ ଦେଇଅଛି । ଶାସକ ଓ ଶାସିତଗଣ ମଧ୍ୟରେ ବହୁଦିନପୂର୍ବରୁ ଯେଉଁ ଘନିଷ୍ଠ ସଂପର୍କ ଓ ସ୍ୱାର୍ଥର ଏକତା ରହି ଆସିଥିଲା ତାହା କ୍ରମ ଅବସ୍ଥା ଜନିତ ବାୟୁମଣ୍ଡଳରେ ଶିଥିଳ ହୋଇପଡ଼ୁଛି । ନୂତନ ଭାବ ଗ୍ରହଣ ଦ୍ୱାରା ଆପଣାକୁ ପରିବର୍ତ୍ତିତ ଅବସ୍ଥାର ସମକକ୍ଷ କରି ଉନ୍ନତ ପଥରେ ଅଗ୍ରସର ହେବା ସକାଶେ ଯେଉଁ ସ୍ୱାଧୀନତା ଓ ସୁବିଧା ଆବଶ୍ୟକ ତାର ଅଭାବରେ ଶାସନ ପ୍ରଣାଳୀରେ ଯୁଗୋପଯୋଗୀ ସଂସ୍କାର ପଛେଇ ଯାଉଛି ଏବଂ ପ୍ରାଚୀନ ଗଣତନ୍ତ୍ର ମୂଳକ ଅନୁଷ୍ଠାନ ଗୁଡ଼ିକର ଅଗ୍ରଗତିଶୀଳ ଅଭାବ ସବୁ ଆପଣାର ହୋଇଥିବା ପ୍ରବୃତ୍ତି ହରାଇ ଅଛନ୍ତି ।

## ଅତୀତର ଧାରା ସହଯୋଗ-ସୂତ୍ର ରକ୍ଷାର ଆବଶ୍ୟକତା :

କୋଶଳ ସମସ୍ୟାର ସନ୍ତୋଷଜନକ ସମାଧାନ କରିବାକୁ ହେଲେ କ୍ରମ ପ୍ରକ୍ରିୟା ଯୋଗୁଁ ଯେଉଁଠାରୁ ଉନ୍ନତିର ପଥ ରୁଦ୍ଧ ହୋଇ ରହିଅଛି ସେହିଠାରୁ ଆରମ୍ଭ କରି ବିକାଶ ପଥରେ ଅଗ୍ରସର ହେବାକୁ ପଡ଼ିବ । ସମୟ ସ୍ରୋତରେ ପ୍ରତିଲୋମ ଗତି କରିବା ସମ୍ଭବ ନୁହେଁ । ତେଣୁ ଇତି ମଧ୍ୟରେ ସମାଜରେ ଯେଉଁ

ନୂତନ ସ୍ୱରାଷ୍ଟ୍ର ପ୍ରବେଶ କରିଅଛୁ ତାହା ହୃଦୟଙ୍ଗମ କରି ଏବଂ ଯେଉଁ ନୂତନ ଅବସ୍ଥାଗୁଡ଼ିକ ଆମ୍ଭମାନଙ୍କର ସମ୍ମୁଖୀନ ହୋଇଅଛି ସେ ସବୁର ଯଥୋଚିତ ସମାଧାନ କରି ପୂର୍ବେ ସ୍ୱାଭାବିକ ପଥରେ ଗତି କରିଥିଲେ କୋଶଳର ବିକାଶ ଧାରା ଯେଉଁ ଅନୁଷ୍ଠାନରେ ପରିଣତି ଲଭିଥାଆନ୍ତା ତାହାର ପୁନର୍ଗଠନରେ ଆମ୍ଭମାନଙ୍କ ବ୍ରତୀ ହେବା କର୍ତ୍ତବ୍ୟ । କୋଶଳର ବିବର୍ତ୍ତନ ଧାରାଗୁଡ଼ିକ ରାଷ୍ଟ୍ରସଂଘ ଗଠନ ଦିଗରେ ଗତି କରୁଥିଲା; ତେଣୁ ତାହାର ଆଧୁନିକ ସମସ୍ୟାବଳୀର ସମାଧାନ ସେହି ରାଷ୍ଟ୍ରସଂଘ ଗଠନ ଛଡ଼ା ଅନ୍ୟ କୌଣସି ଉପାୟରେ ହୋଇ ପାରିବ ନାହିଁ ।





# ଦ୍ୱିତୀୟ ପରିଚ୍ଛେଦ ।

## ପୂର୍ବ ଗଡ଼ଜାତ ଅଞ୍ଚଳର ସମସ୍ୟା

### ଅବସ୍ଥିତି ଓ ଗଠନ :—

ଠିକ୍ ବଙ୍ଗ ଦେଶମଧ୍ୟରେ ଥିବା ଷ୍ଟେଟ ଗୁଡ଼ିକୁ ଛାଡ଼ଦେଲେ, ମୟୂରଭଞ୍ଜ ସହ ଅନ୍ୟାନ୍ୟ ପୂର୍ବଗଡ଼ଜାତ ରାଜ୍ୟଗୁଡ଼ିକ ଗୋଟିଏ ଅବିଚ୍ଛିନ୍ନ ଅଞ୍ଚଳ ଗଠନ କରି ଅଛନ୍ତି । ଉତ୍ତରରେ ବିହାର ଓ ମଧ୍ୟପ୍ରଦେଶରୁ ଆରମ୍ଭ କରି ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ, ଏବଂ ପଶ୍ଚିମରେ ନାଗପୁରଠାରୁ ପୂର୍ବରେ ମୟୂରଭଞ୍ଜ ଓ ରଣପୁର ପର୍ଯ୍ୟନ୍ତ ଏହା ବିସ୍ତୃତ । ଏହି ଦେଶୀୟ ରାଜ୍ୟ ଗୁଡ଼ିକର ଆୟତନ ପ୍ରାୟ ୬୦,୦୦୦ ବର୍ଗମାଇଲ ଓ ଲୋକସଂଖ୍ୟା ପ୍ରାୟ ୮୦,୦୦,୦୦୦ । ଏହି ପୂର୍ବ ଗଡ଼ଜାତ ମଣ୍ଡଳରେ ୪୦ ଗୋଟି ଷ୍ଟେଟ୍ ବା ଦେଶୀୟ ରାଜ୍ୟ ଅଛି ଓ ଏଥିମଧ୍ୟରୁ ୩୦ ଗୋଟି ଓଡ଼ିଆ ଷ୍ଟେଟ । ପୂର୍ବଗଡ଼ଜାତ ମଣ୍ଡଳସ୍ଥ ଓଡ଼ିଆ—ଭାଷାଭାଷୀ ଅଞ୍ଚଳର ଆୟତନ ୪୪,୦୦୦ ବର୍ଗମାଇଲରୁ ଅଧିକ; ଏବଂ ତାହା ସମଗ୍ର ପୂର୍ବଗଡ଼ଜାତ ମଣ୍ଡଳର ମୋଟ ଆୟତନର ପ୍ରାୟ ପନ୍ଦର ଭାଗର ଏଗାର ଭାଗ ହେବ । ଏହାର ଓଡ଼ିଆଭାଷୀ ଲୋକସଂଖ୍ୟା ୬୩,୦୦,୦୦୦ ରୁ ଅଧିକ ଏବଂ ତାହା ସମଗ୍ର ପୂର୍ବଗଡ଼ଜାତ ମଣ୍ଡଳର ଲୋକସଂଖ୍ୟାର ପାଞ୍ଚ ଭାଗର ଚାରି ଭାଗ । ୩୦ ଗୋଟି ଓଡ଼ିଆ ଷ୍ଟେଟ ମଧ୍ୟରୁ ୧୩ ଗୋଟି, ଅର୍ଥାତ୍ ତାର ପ୍ରାୟ ଅର୍ଦ୍ଧ ସଂଖ୍ୟକ, କୋଶଳ ଷ୍ଟେଟ । ଏହି କୋଶଳ ଷ୍ଟେଟ୍ ଗୁଡ଼ିକର ଆୟତନ ୩୧,୦୦୦ ବର୍ଗମାଇଲରୁ ଅଧିକ ଏବଂ ଲୋକସଂଖ୍ୟା ପ୍ରାୟ ୩୫,୫୦,୦୦୦ । ତେଣୁ କୋଶଳ ଷ୍ଟେଟ୍ ଗୁଡ଼ିକର ମୋଟ ଆୟତନ ସମଗ୍ର ପୂର୍ବଗଡ଼ଜାତ-ମଣ୍ଡଳର ଆୟତନର ଅଧାରୁ ବେଶୀ ଏବଂ କେବଳ ଓଡ଼ିଆ ଷ୍ଟେଟ୍ ଗୁଡ଼ିକର ମୋଟ ଆୟତନର ଚାରି ଭାଗରୁ ତିନି ଭାଗ । ଏହାର ଲୋକସଂଖ୍ୟା ସମଗ୍ର ପୂର୍ବଗଡ଼ଜାତ ମଣ୍ଡଳର ଲୋକସଂଖ୍ୟାର ଷୋହଳ ଭାଗର ସାତ ଭାଗ ଓ କେବଳ ଓଡ଼ିଆ ଷ୍ଟେଟ ଗୁଡ଼ିକର ଲୋକସଂଖ୍ୟାର ଷୋହଳ ଭାଗର ନଅ ଭାଗ ।

### କୋଶଳ ଷ୍ଟେଟଗୁଡ଼ିକର ଭାଗ୍ୟ ପୂର୍ବଗଡ଼ଜାତ ମଣ୍ଡଳ ସହ ଘନିଷ୍ଠ ଭାବରେ ଜଡ଼ିତ :—

କୋଶଳ ଷ୍ଟେଟ ଗୁଡ଼ିକର ମୋଟ ଆୟତନ ଓ ଲୋକସଂଖ୍ୟା ସମଗ୍ର ପୂର୍ବ ଗଡ଼ଜାତ ମଣ୍ଡଳର ଆୟତନ ଓ ଲୋକସଂଖ୍ୟାର ଅର୍ଦ୍ଧେକରୁ ବେଶୀ; ଏବଂ ଓସ-

ସ୍ଥିତିର ଭବିଷ୍ୟ ପୂର୍ବଗଡ଼ଜାତ ସ୍ଥାନଗୁଡ଼ିକର ଭାଗ୍ୟ ସହ ଘନିଷ୍ଠ ଭାବରେ ଜଡ଼ିତ । ସମାନ ଇତିହାସ ଓ ପରମ୍ପରାଗତ ଐକ୍ୟ, ସମାନ ଅର୍ଥନୀତି ଓ ସାମାଜିକ ସମ୍ବନ୍ଧ ଏବଂ ସମଗ୍ର ଜୀବନ ପ୍ରତି ଦୃଷ୍ଟି-ଭଙ୍ଗୀର ସମାନତା ସମଗ୍ର ପୂର୍ବଗଡ଼ଜାତଗୁଡ଼ିକୁ ଏକତାର ନିବିଡ଼ ବନ୍ଧନରେ ଆବଦ୍ଧ କରି ରଖିଅଛି । ସର୍ବୋପରି ସେମାନଙ୍କ ଶାସନ ପ୍ରଣାଳୀରେ ଯେଉଁ ସାମଞ୍ଜସ୍ୟ ବିଦ୍ୟମାନ ଅଛି, ତାହା ଅନ୍ୟାନ୍ୟ ଯେ କୌଣସି ବିବେଚନା ଅପେକ୍ଷା ଖୁବ୍ ନିବିଡ଼ ଭାବରେ ସେମାନଙ୍କୁ ଏକାଠି ବାନ୍ଧି ରଖିଅଛି ।

## ପୂର୍ବ ଗଡ଼ଜାତ ମଣ୍ଡଳର ଐତିହାସିକ ପଟଭୂମି :—

କୋଶଳ ଷ୍ଟେଟ ଗୁଡ଼ିକର ଐତିହାସିକ ପଟଭୂମି ଓ ପୂର୍ବ ଗଡ଼ଜାତ ମଣ୍ଡଳର ଅନ୍ୟାନ୍ୟ ଷ୍ଟେଟ ଗୁଡ଼ିକର ଐତିହାସିକ ପଟଭୂମି ମଧ୍ୟରେ ସାମଞ୍ଜସ୍ୟ ରହିଅଛି । ଅଦ୍ଭୁତ ଆକାରରେ ଗତ ଶତାବ୍ଦୀରେ ଗଢ଼ା ହୋଇଥିବା ଅଳ୍ପ କେତୋଟି ଷ୍ଟେଟ ଛାଡ଼ିଦେଲେ ବାକିତକ ଗତ ୧୯୦୦ ବର୍ଷ ମଧ୍ୟରେ ଭିନ୍ନ ଭିନ୍ନ ସମୟରେ ଷ୍ଟେଟ୍ ରୂପେ ଗଠିତ ହୋଇ ଉଦ୍ଭୂତ ହୋଇଥିଲେ । କିନ୍ତୁ ଏହି ସମସ୍ତ ଷ୍ଟେଟ୍ ଗୁଡ଼ିକ ସେମାନଙ୍କ ନିଜ ନିଜର ବଶିଷ୍ଟ ବ୍ୟକ୍ତିତ୍ୱ ବିକାଶ କରିଅଛନ୍ତି ଏବଂ ସ୍ଥାନୀୟ ବୈଶିଷ୍ଟ୍ୟ ଭାବ ଓ ଦେଶପ୍ରୀତି ପ୍ରତ୍ୟେକ ଷ୍ଟେଟରେ ସମ୍ୟକ୍ ରୂପେ ବିକାଶ ଲାଭ କରିଅଛି । ଏ ଷ୍ଟେଟ୍ ଗୁଡ଼ିକ ଆୟତନ ଓ ରାଜସ୍ୱ ସଂପର୍କୀୟ ଶକ୍ତି ଓ ସାମର୍ଥ୍ୟରେ ଭିନ୍ନ ଥିଲେହେଁ ସେମାନେ କ୍ରମାନ୍ନତିର ଗୋଟାଏ ସାଧାରଣ ସ୍ତରରେ ପହଞ୍ଚିଥିବା ପରିଲକ୍ଷିତ ହୁଏ । ଏହି ଷ୍ଟେଟ ଗୁଡ଼ିକ ମଧ୍ୟରୁ କେତେକେ ତଦପେକ୍ଷା ବୃହତ୍ତର ଷ୍ଟେଟ, ରାଜ୍ୟ ବା ସାମ୍ରାଜ୍ୟର ସାମନ୍ତ ରାଜ୍ୟ ଅଥବା କରଦ ରାଜ୍ୟ ହୋଇ-ଥିଲେହେଁ ସେମାନଙ୍କ ଆଭ୍ୟନ୍ତରୀଣ ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ସର୍ବଦା ଅକ୍ଷୁଣ୍ଣ ରହିଅଛି ।

## ପୂର୍ବ ଗଡ଼ଜାତର ସମସ୍ୟା :—

ଏବେ ପୂର୍ବାଞ୍ଚଳ-ଗଡ଼ଜାତ ସବୁ ଏକାଧିକ ଅସୁବିଧାର ସମ୍ମୁଖୀନ ହୋଇ ଅଛନ୍ତି ଏବଂ ଏହା କହିବା ବାହୁଲ୍ୟ ଯେ କୋଶଳ ଷ୍ଟେଟ-ସଂପର୍କରେ କୁହାଯାଇଥିବା ଅସୁବିଧା ବା ବାଧା ଏ ସବୁ ଅସୁବିଧାର ପ୍ରଧାନ କାରଣ । କୋଶଳ ଷ୍ଟେଟ ପରି ଏହି ଷ୍ଟେଟ ଗୁଡ଼ିକ ଗତ ଶତାବ୍ଦୀ ମଧ୍ୟରେ ସ୍ୱାଭାବିକ ଭାବରେ ବିକାଶ ଲାଭ କରିନାହାନ୍ତି । ସମ୍ପଦର ପରିପୂର୍ଣ୍ଣ ସଦ୍ବ୍ୟବହାର ସୁଯୋଗ କରିବା ସୁଯୋଗ ଓ ସ୍ୱାଧୀନତା ମଧ

ସେମାନେ ପାଇ ନାହାନ୍ତି । ସେମାନେ ଯେଉଁ ଆର୍ଥିକ ଓ ନୈତିକ ବାତା-ମଣ୍ଡଳରେ ଅବସ୍ଥାନ କରୁଅଛନ୍ତି, ତାହାହିଁ ତାହାର ପ୍ରଧାନ କାରଣ, ଉନ୍ନତି-ପନ୍ଥାର ଅଭାବ ନୁହେ । ଶାସକ ଓ ଶାସିତ ଉଭୟେ ଏହି ଦୁର୍ବ୍ୟବସ୍ଥାର ବିଷମୟ ଫଳ ସମାନ ଭାବରେ ଭୋଗ କରୁଅଛନ୍ତି । ଆଧୁନିକ ଜାତିନୀତିର ଅଭାବ ବୃଦ୍ଧି ସଙ୍ଗେ ସଙ୍ଗେ ଶାସନ କ୍ଷେତ୍ରରେ ଯେଉଁ ନୂଆଁ ନୂଆଁ ଦାବୀ ଉତ୍ଥାପିତ ହୋଇଅଛି ତାହା ଷ୍ଟେଟ ଗୁଡ଼ିକ ବ୍ୟକ୍ତି ଭାବରେ ମୁକାବିଲା କରିବାକୁ ସଂପୂର୍ଣ୍ଣରୂପେ ସମର୍ଥ ହୋଇ ପାରୁ ନାହାନ୍ତି । ଏହି ଷ୍ଟେଟ ମାନଙ୍କ ଭିତରେ ପ୍ରାକୃତିକ ସଂପଦ ପ୍ରଚୁର ପରିମାଣରେ ଥିଲେହେଁ ବ୍ୟକ୍ତିଗତ ଶକ୍ତି ଓ ସାମର୍ଥ୍ୟର ଅଳ୍ପତା ଯୋଗୁଁ ସେମାନେ ପୃଥକ୍ ଭାବରେ ତାର ସୁପ୍ରଯୁକ୍ତ ବ୍ୟବହାର କରି ପାରୁନାହାନ୍ତି । ଏହି ସବୁ କାରଣରୁ ଆର୍ଥିକ କ୍ଷେତ୍ରରେ ଆବଶ୍ୟକ ଓ ଆଶାନୁରୂପ ଉନ୍ନତି ହୋଇ ପାରୁ ନାହିଁ ଓ ତାହାର ଫଳରେ ଜନସାଧାରଣଙ୍କ ଜୀବନଯାପନ - ପ୍ରଣାଳୀର ମାନବୃଦ୍ଧି ଅଥବା ସାମାଜିକ ଓ ଶାସନ କାର୍ଯ୍ୟରେ ଯେଉଁ ପରିମାଣରେ ଖର୍ଚ୍ଚ ହେବା ଆବଶ୍ୟକ ସେହି ଅନୁପାତରେ ଆୟ ବୃଦ୍ଧି ହୋଇ ପାରୁ ନାହିଁ । ଶାସନ କ୍ଷେତ୍ରରେ ଅଭ୍ୟନ୍ତରୀଣ ପରିସ୍ଥିତିରେ କେତେକ ପରିବର୍ତ୍ତନ ଘଟିଅଛି ଓ ଅଳ୍ପ ପରିମାଣରେ କେନ୍ଦ୍ରଶକ୍ତି ଗଠନ କାର୍ଯ୍ୟ କାହିଁ ହୋଇ-ଅଛି ସତ୍ୟ; କିନ୍ତୁ ପ୍ରାଚୀନ ଶାସନ ପ୍ରଣାଳୀରେ ଜନସାଧାରଣଙ୍କ ଯେଉଁ ପ୍ରତ୍ୟକ୍ଷ ସହଯୋଗ ଥିଲା, କେନ୍ଦ୍ରଶକ୍ତିର ପ୍ରୟୋଜନୀୟତା ଦୃଷ୍ଟିରେ ଓ ଶାସନ କାର୍ଯ୍ୟର ଉତ୍କର୍ଷ ସାଧନାର୍ଥେ ତାହାର ବିଲୋପ ସାଧନ କରାଯାଇଅଛି । ବର୍ତ୍ତମାନ ଆର୍ଥିକ ଦିଗରେ ଗତି କରି ନ ଥିବାରୁ, ଭାବ ଓ ସମୟର ପରିବର୍ତ୍ତନ ଅନୁସାରେ ଅର୍ଥନୀତି ଓ ଶାସନ କ୍ଷେତ୍ରରେ ଯୁଗୋପଯୋଗୀ ପରିବର୍ତ୍ତନ ଘଟୁ ନାହିଁ । ପୂର୍ବେ ଜନସାଧା-ରଣଙ୍କ ଶାସନ କାର୍ଯ୍ୟ ସହିତ ଯେଉଁ ନିକଟ ସମ୍ପର୍କ ରହିଥିଲା, ତାହା ପୁନର୍ବାର ସ୍ଥାପନ କରିବା ସକାଶେ ପୁରାତନ ଅନୁଷ୍ଠାନ ପରିବର୍ତ୍ତେ ଯେଉଁ ନୂଆଁ ନୂଆଁ ପ୍ରତି-ଷ୍ଠାନ ଗୁଡ଼ିକର ଆବଶ୍ୟକତା ଅନୁଭୂତ ହୁଏ ସେ ପ୍ରକାର ଅନୁଷ୍ଠାନ ଗଠିତ କରନାହିଁ ।

## ରାଷ୍ଟ୍ରସଂଘ ଗଠନରେ ଏହାର ସମାଧାନ :—

.. କୋଶଲ ଷ୍ଟେଟ ମାନଙ୍କ ସମ୍ପର୍କରେ ପୂର୍ବେ ଯେପରି କୁହାଯାଇଛି, ପୂର୍ବୋ-ଲ୍ଲିଖିତ ସମସ୍ୟାର ସମାଧାନ ଠିକ୍ ସେହିପରି ସଙ୍ଘ ଗଠନରେହିଁ ସମ୍ଭବ ହେବ ।

ବହୁ ବର୍ଷ ହେଲା ଏହାର ଆବଶ୍ୟକତା ଅନୁଭୂତ ହୋଇ ଆସୁଅଛି ଏବଂ ଗତ କୋଡ଼ିଏ ବର୍ଷ ମଧ୍ୟରେ ଏକାଧିକ ଥର ଏ ବିଷୟର ବିଶଦ ଆଲୋଚନା ହୋଇ ସାରିଅଛି । ଦେଶୀୟ ରାଜ୍ୟ ଗୁଡ଼ିକର ଉପକାର ସାଧନାର୍ଥେ ପ୍ରଭୁତା ଓ ସାମର୍ଥ୍ୟର କେନ୍ଦ୍ରୀଭୂତକରଣ ଏବଂ ସାଧାରଣ ସ୍ୱାର୍ଥ ଜଡ଼ିତ ଯେଉଁ ବିଷୟ ସବୁର ପରିଚାଳନା ଓ ଖର୍ଚ୍ଚ ବହନ ବୃଦ୍ଧି ଭାବରେ ଷ୍ଟେଟ ଗୁଡ଼ିକର ସାମର୍ଥ୍ୟର ବହିର୍ଭୂତ ସେ ସବୁର ପରିଚାଳନା ଭାର ଏ ଉଦ୍ଦେଶ୍ୟରେ ଗଠିତ କେନ୍ଦ୍ରଶକ୍ତି ହସ୍ତରେ ଅର୍ପଣ କରିବା ଦିଗରେ ଗତ କେତେବର୍ଷ ମଧ୍ୟରେ ଚେଷ୍ଟା କରାଯାଇଛି । ସାଧାରଣ ସର୍ବୋଚ୍ଚ ବିଚାରାଳୟ (Common high court) ଜଙ୍ଗଲ ଓ କୃଷିବିଭାଗ ପରିଚାଳନା ସବିଷୟରେ ବିଶେଷଜ୍ଞ ମାନଙ୍କର ପରାମର୍ଶ ସବୁ ଷ୍ଟେଟ ଅଳ୍ପ ଖର୍ଚ୍ଚରେ ପାଇ ପାରିବେ ବୋଲି ଯେଉଁ ସାଧାରଣ ଜଙ୍ଗଲ ଓ କୃଷି-ପରାମର୍ଶଦାତା ବିଭାଗ ( Forest and Advisory staff ) ଖୋଲା ଯାଇଛି ତାହା ଏବଂ ଜଙ୍ଗଲ ଓ କୃଷି ସ୍କୁଲ ଷ୍ଟେଟ ଗୁଡ଼ିକର ସମ୍ମିଳିତ ସହଯୋଗରେ ପରିଚାଳିତ ହେଉଅଛି । ଏହି ପ୍ରଗତି-ପଥ ଅତୀତ ବିବର୍ତ୍ତନ ଧାରାର ଠିକ୍ ଅନୁବର୍ତ୍ତୀ । ଆଉ ମଧ୍ୟ ଭବିଷ୍ୟତ୍ ବିକାଶପଥ ପରିଷ୍କାର ଭାବରେ ଦେଖାଇ ଦେବା ସକାଶେ ଅଠରଗଡ଼ ରାଷ୍ଟ୍ରସଂଘର ଦୃଷ୍ଟାନ୍ତ ରହିଅଛି । ପୂର୍ବଗଡ଼ଜାତ ଷ୍ଟେଟସଂଘ ଗଠନ ଯେ କେବଳ ସମ୍ଭବ ଓ କାର୍ଯ୍ୟୋପଯୋଗୀ ତାହା ନୁହେଁ, ଏହା ବାଞ୍ଛନୀୟ ଓ ଅପରିହାର୍ଯ୍ୟ ମଧ୍ୟ । ରାଜା ମହାରାଜାମାନେ ଏଥିର ଆବଶ୍ୟକତା ବୁଝି ସାରିଛନ୍ତି ଏବଂ ଏହା ସମସ୍ତେ ଜାଣନ୍ତି ଯେ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ଗଠନ କରିବାକୁ ସେମାନେ ସ୍ଥିର କରି ସାରିଲେଣି ।

## ଜନସାଧାରଣଙ୍କ ସହଯୋଗ ଓ ଗଣତନ୍ତ୍ର ଶାସନ ପ୍ରତିଷ୍ଠା :—

ପୂର୍ବେ ସ୍ଥାନୀୟ କାର୍ଯ୍ୟରେ ଜନସାଧାରଣଙ୍କ ଯେଉଁ ଘନିଷ୍ଠ ସହଯୋଗ ରହିଥିଲା, ତଦୁପରି ପ୍ରତିଷ୍ଠିତ ହୋଇ ଏହି ଷ୍ଟେଟ ଗୁଡ଼ିକର ଶାସନତନ୍ତ୍ର ଦେଶଜ ପଥରେ ବୃଦ୍ଧିଲାଭ କରିଥିଲା । କିନ୍ତୁ ଯେତେବେଳେ ଶାସନ କାର୍ଯ୍ୟରେ ଆଧୁନିକତା ପ୍ରବେଶ କରି ତାକୁ ପ୍ରଭାବିତ କଲା, ତାରି ସଙ୍ଗେ ସଙ୍ଗେ ସେତେବେଳେ ପ୍ରଜାସ୍ୱାର୍ଥମୂଳକ ଅନୁଷ୍ଠାନ ଗୁଡ଼ିକର ଆନୁଷଙ୍ଗିକ ପରିବର୍ତ୍ତନ ଓ ବିକାଶ ନ ହେବାରୁ, ଶାସନ ପ୍ରଣାଳୀରେ କୌଣସି ଶୂନ୍ୟସ୍ଥାନ ଅପୂର୍ଣ୍ଣ ରହିଗଲା । କିନ୍ତୁ ଆଧୁନିକ ଗଣତାନ୍ତ୍ରିକ ଭାବର ସଂଘର୍ଷ ଷ୍ଟେଟ ସବୁରେ ଅନୁଭୂତ ହେଉଅଛି ଏବଂ ଜନସାଧାରଣଙ୍କ ମଧ୍ୟରେ ରାଜନୈତିକ ଜାଗ୍ରତ ହେବା ସଙ୍ଗେ ସଙ୍ଗେ ପ୍ରାପ୍ତ ସମଗ୍ର

ଷ୍ଟେଟରେ ପ୍ରତିନିଧିମୂଳକ ଅନୁଷ୍ଠାନ ଗୁଡ଼ିକ ସ୍ଥାପିତ ହୋଇଅଛି । ରାଜନୈତିକ ଜାଗୃତିର ପ୍ରସାର ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ଶାସନ ସହିତ ଅଧିକ ଭାବରେ ସଂଶ୍ଳିଷ୍ଟ ରହିବାର ଦାବୀ କ୍ରମାଗତ ବଢ଼ୁଛି ଏବଂ ନରେନ୍ଦ୍ର ମଣ୍ଡଳ ଅଲ୍ପଦିନ ପୂର୍ବେ ଯେଉଁ ଘୋଷଣା କରିଅଛନ୍ତି ତହିଁରୁ ସ୍ପଷ୍ଟ ଜଣାପଡ଼ୁଛି ଯେ ରାଜନ୍ୟବର୍ଗ ସମୟର ପରିବର୍ତ୍ତନ ସହିତ ସମଗତି କରିବାର ଆବଶ୍ୟକତା ଅନୁଭବ କରୁ-ଅଛନ୍ତି । ଏହା ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ ନିକଟ ଭବିଷ୍ୟତରେ ଯେଉଁ ବୈଧିକ ଶାସନ-ସଂକ୍ରାନ୍ତ ପରିବର୍ତ୍ତନ ହେବ, ତାରି ଫଳରେ ଷ୍ଟେଟ ଗୁଡ଼ିକର ଶାସନପ୍ରଣାଳୀ ସଂପୂର୍ଣ୍ଣରୂପେ ଗଣତନ୍ତ୍ର-ଆକାର ଧାରଣ କରିବ ଏବଂ ତହିଁରେ ଜନସାଧାରଣଙ୍କ ପୂର୍ଣ୍ଣ ସହଯୋଗ ଜଡ଼ିତ ରହିବ ।

## ଷ୍ଟେଟମାନଙ୍କ ପ୍ରାଦେଶିକ ସ୍ୱାଧୀନତା ଓ ରାଷ୍ଟ୍ରସଂଘ :—

ପ୍ରତ୍ୟେକ ବ୍ୟକ୍ତି ନିଜର ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବାକୁ ଯେପରି ସର୍ବଦା ଉତ୍ସୁକ, ଷ୍ଟେଟ ଗୁଡ଼ିକ ମଧ୍ୟ ଆପଣା ଆପଣା ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତାରେ କୌଣସି ବାହ୍ୟ ଶକ୍ତିର ହସ୍ତକ୍ଷେପ ବିଷୟରେ ତଦ୍ରୂପ ଅସହିଷ୍ଣୁ । ତେଣୁକରି ଶକ୍ତି ଓ ସାମର୍ଥ୍ୟର ଏକତ୍ର ସମାବେଶ ଓ ଏକତ୍ର ପରିଚାଳନା ବିଷୟରେ କୌଣସି ନିଷ୍ପତ୍ତିମୂଳକ ସିଦ୍ଧାନ୍ତରେ ଉପନୀତ ହୋଇ ନ ପାରି ଷ୍ଟେଟ ଗୁଡ଼ିକ ଏ ବିଷୟରେ ବିଳମ୍ବ ଘଟାଇଛନ୍ତି । କିନ୍ତୁ ପାରିପାର୍ଶ୍ୱିକ ଘଟଣାବଳୀର ଗୁରୁତ୍ୱ ଓ ଆପଣାକୁ ପରିବର୍ତ୍ତନର ଉପଯୋଗୀ କରିବାର ପ୍ରୟୋଜନୀୟତା ବର୍ତ୍ତମାନ ସମସ୍ତ ପ୍ରକାର ଅନିଶ୍ଚିତତା ଦୂର କରିଅଛି ଓ ବଳବତ୍ତର ଯୌକ୍ତିକତାର ପ୍ରଭାବରେ ମାନସିକ ଦୁର୍ବଳତା ଅପସାରିତ ହୋଇଅଛି । ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ରକ୍ଷା ସକାଶେ ଯାହା ଯାହା ଆବଶ୍ୟକ ସେ ଗୁଡ଼ିକ ଓ କେନ୍ଦ୍ରୀଭୂତ ଶାସନର ପ୍ରୟୋଜନୀୟତା ବିଷୟ ଗୁଡ଼ିକ ମଧ୍ୟରେ ଗୋଟିଏ ସନ୍ତୋଷ ଜନକ ମୀମାଂସା କରିବାକୁ ହେବ । ଏହି ଦିଗରେ ପୂର୍ବରୁ କାର୍ଯ୍ୟାରମ୍ଭ ହୋଇ-ଥିବାରୁ ତାହା କଷ୍ଟସାଧ୍ୟ ହେବନାହିଁ । ଷ୍ଟେଟ ଗୁଡ଼ିକ ଯେ ଏକତା ଓ ପରସ୍ପର ହିତ ମମତା-ସୂତ୍ରରେ ବନ୍ଧା — ଏହି ଭାବ ସେମାନଙ୍କ ମଧ୍ୟରେ ଜାଗି ରହିଛି; ଏବଂ ଷ୍ଟେଟବାସୀ ମାନଙ୍କ ମଧ୍ୟରେ ଯେଉଁ ସ୍ଥାନୀୟ ଦେଶ-ପ୍ରୀତି ବିଦ୍ୟମାନ ଅଛି ତାହା ମଧ୍ୟ ସେମାନେ ଉପଲବ୍ଧି କରିଅଛନ୍ତି । ଏହି ଗୁଣ ଗୁଡ଼ିକୁ ସ୍ଥାନୀୟ କ୍ଷେତ୍ରରେ ଓ ସ୍ଥାନୀୟ କାର୍ଯ୍ୟାବଳୀରେ କାର୍ଯ୍ୟକାରୀ ହେବାର ପୂର୍ଣ୍ଣ ସୁବିଧା ଦେବା ନିତାନ୍ତ ଦରକାର ।

## ରାଷ୍ଟ୍ରସଂଘର ସୁବିଧା :—

ପୂର୍ବଗଡଜାତ ରାଷ୍ଟ୍ରସଂଘ ଗଠିତ ହେଲେ ଏହି ସୁବିଧା ହେବ ଯେ ୬୦,୦୦୦ ବର୍ଗମାଇଲ ଆୟତନ-ବିଶିଷ୍ଟ ଗୋଟିଏ ଅବିଚ୍ଛିନ୍ନ ଅଞ୍ଚଳ ଗଠିତ ହୋଇ ଏକପ୍ରକାର ପାରଂପରିକତା, ଦୃଷ୍ଟିଭଙ୍ଗୀ ଓ ଶାସନପ୍ରଣାଳୀ ବିଶିଷ୍ଟ ୮୦,୦୦,୦୦୦ ଲୋକଙ୍କୁ ସମସ୍ୱାର୍ଥଗତ ସମସ୍ୟା ଗୁଡ଼ିକର ସମାଧାନ ପାଇଁ ଏକତ୍ରିତ କରିବ । ଅଥଚ ମଧ୍ୟ ଏହା ପ୍ରତ୍ୟେକ ଷ୍ଟେଟର ସ୍ୱତନ୍ତ୍ର ଅବସ୍ଥିତି ଓ ବିଶିଷ୍ଟ ବ୍ୟକ୍ତିତ୍ୱ ସଂରକ୍ଷଣ କରି ତାହାର ଅଧିବାସି-ଗଣଙ୍କୁ ସ୍ଥାନୀୟ ସଂସ୍କାରବିଦ ବିଷୟ ସବୁରେ ନେତୃତ୍ୱ ଦେଇ ସେ ଗୁଡ଼ିକର ସମାଧାନ କରଣାର୍ଥେ ପ୍ରଶସ୍ତ କ୍ଷେତ୍ର ଛାଡ଼ିଦେବ । ବ୍ୟକ୍ତି-ଗତ ଅବସ୍ଥିତିର ଧ୍ୱଂସ ସାଧନ ନ କରି ଏହା ଏକତା ଆନୟନ କରିବ ଏବଂ ଅତୀତର ବିବର୍ତ୍ତନଧାରାନୁସାରୀ ହୋଇଥିବାରୁ ଏହା ସ୍ଥାୟିତ୍ୱ ଲାଭ କରିପାରିବ । ଷ୍ଟେଟବାସୀ ଜନସାଧାରଣ ମଧ୍ୟ ରାଷ୍ଟ୍ରସଂଘ ସଂଗଠନରୁ ଯଥେଷ୍ଟ ଉପକାର ପାଇ-ପାରିବେ; କାରଣ ଏହା ସେମାନଙ୍କ ସାମାଜିକ ଗଠନ ଓ ଏକତା ଅକ୍ଷୁଣ୍ଣ ରଖିବ ଏବଂ ବୃହତ୍ତର ଗୋଷ୍ଠୀ ଭିତରେ ରହି ଲୋକେ ଯେଉଁ ସୁବିଧା ଓ ସୁଯୋଗ ପାଇ-ଥାନ୍ତି ତାହା ମଧ୍ୟ ସେମାନେ ପାଇପାରିବେ । ସେମାନଙ୍କ ଜୀବନଯାପନ ପ୍ରଣାଳୀ, ରୀତିନୀତି, ସାମାଜିକ ପ୍ରଥା ଓ ପାରଂପରିକତା କୌଣସି ପ୍ରକାରେ ବାଧାପ୍ରାପ୍ତ ହୋଇ ପାରିବ ନାହିଁ । ପକ୍ଷାନ୍ତରେ ସମକୃଷ୍ଟିଗତ ଲୋକେ ଏକତ୍ରିତ ହୋଇ-ପାରିବେ ଏବଂ ସ୍ଥାନୀୟ ଶାସନ କାର୍ଯ୍ୟରେ ଓ ସଙ୍ଘାତ୍ମକ କେନ୍ଦ୍ରୀୟ ଶାସନରେ ମଧ୍ୟ ସେମାନଙ୍କ ଗଣତନ୍ତ୍ର ବିଷୟକ ଅଧିକାର କାର୍ଯ୍ୟକାରୀ କରିବାରେ ଅସୁବିଧା ପାଇବେ ନାହିଁ ।

## ଅର୍ଥନୀତିଗତ ଓ ରାଜସ୍ୱ ସମ୍ବନ୍ଧୀୟ ସ୍ଥାୟିତ୍ୱ :—

ଏହା ସମସ୍ତେ ଭଲ ଭାବରେ ଜାଣନ୍ତି ଯେ ପ୍ରାକୃତିକ ସଂପଦରେ ପୂର୍ବ ଗଡ଼ଜାତ ମଣ୍ଡଳ ଭାରତରେ ବୋଧହୁଏ ସର୍ବାପେକ୍ଷା ଅଧିକ ସମୃଦ୍ଧିଶାଳୀ । ସମସ୍ତ ପ୍ରକାର ମୂଲ୍ୟ ଖନିଜ ଦ୍ରବ୍ୟ ପୂର୍ବଗଡଜାତ ଅଞ୍ଚଳରେ ମିଳେ । ଏସିଆ ମହାଦେଶ ଭିତରେ ସର୍ବାପେକ୍ଷା ବୃହତ୍ ଓ ସର୍ବୋତ୍କୃଷ୍ଟ ଲୁହା ପଥର ଏହି ଅଞ୍ଚଳରେ ବିଦ୍ୟମାନ ଅଛି । ବକ୍ସାଇଟ୍, କ୍ରୋମ୍, ମାଙ୍ଗାନିଜ୍, ସୁର୍ମା, ପଥରକୋଇଲା, ଅଭ୍ର, ଭେନେଡ଼ିଅମ୍, ଆସବେଷ୍ଟସ୍, କାଇନାଇଟ୍, ତାମ୍ର, ଚୂନ, କେଓଲିନ.. ଓ ଏହିପରି ଅନେକ ଖନିଜ ସଂପଦ ପୂର୍ବଗଡ଼ଜାତ ଅଞ୍ଚଳରେ ମିଳେ । ଅଣୁବ

ଅବସ୍ଥାରେ ପ୍ରାପ୍ତ ଏହି ଧାତବ ପଦାର୍ଥ ଖୁବ୍ ଉତ୍କୃଷ୍ଟ ଧରଣର ଓ ସେ ଗୁଡ଼ିକର ପରିମାଣ ମଧ୍ୟ ଖୁବ୍ ବେଶୀ । ସଂଘାତ୍ମକ ଶାସନ ପ୍ରତିଷ୍ଠିତ ହେଲମାତ୍ରକେ କେନ୍ଦ୍ରୀୟ ଗଠନ ମୂଳକ ଯୋଜନା ଏବଂ ପ୍ରାଦେଶିକ ବିକାଶ ବଳରେ ଅନେକ ଗୁଡ଼ିଏ ମୂଳ ଓ ବଡ ବଡ ଶିଳ୍ପ କାରଖାନା ବସାଯିବ । ଅନ୍ତତଃ ଦୁଇଟା ଲୁହା କାରଖାନା, ଗୋଟାଏ ଏଲୁମିନିଅମ କାରଖାନା, ଗୋଟାଏ ତମ୍ବା କାର-ଖାନା ଏବଂ ଅନେକଗୁଡ଼ିଏ ସିମେଣ୍ଟ କାରଖାନା ଓ ଆହୁରି ଅନେକ ଖନିଜ ଦ୍ରବ୍ୟ ସଂପର୍କୀୟ କାରଖାନା ବସିବାର ସମ୍ଭାବନା ରହିଅଛି । ପୁଣି ସୁବୃହତ୍ ବନଜାତ ସଂପଦରୁ କାଗଜ କାରଖାନା, ପ୍ଲାଇ ଉଡ୍ ଶିଳ୍ପ କାରଖାନା ଓ ଅନେକ ଗୁଡ଼ିଏ ଛୋଟ ଛୋଟ କାରଖାନା ପ୍ରତିଷ୍ଠାପିତ ହେବାର ସମ୍ଭାବନା ଅଛି । ଏହିପରି ସୂତା ଓ କପଡା କଲ, ଝୋଟ କଲ, ଚିନି କାରଖାନା, ବନସ୍ପତି ତେଲ ଓ ଅନ୍ୟାନ୍ୟ କୃଷିଜାତ ଦ୍ରବ୍ୟର ଶିଳ୍ପ ପ୍ରତିଷ୍ଠାପନର ସମ୍ଭାବନା ମଧ୍ୟ ଅଛି । ବଡ ବଡ ଶିଳ୍ପ ଯୋଜନାର ଭାରି ଓ ସେ ଗୁଡ଼ିକର ବିକାଶଭାର ପୂର୍ବଗଡଜାତ ରାଷ୍ଟ୍ରସଂଘର କେନ୍ଦ୍ର ସରକାର ନିଜ ହାତକୁ ନେବା ମାତ୍ରକେ ଉପର୍ଯ୍ୟୁକ୍ତ ସମ୍ଭାବନା ଗୁଡ଼ିକ ବାସ୍ତବ ଆକାର ଧାରଣ କରିବ । ଦୁର୍ଭାଗ୍ୟ-ବଶତଃ ସମସ୍ତ ଲୁହା ପଥର ପୂର୍ବଗଡ଼ଜାତ ଅଞ୍ଚଳରେ ଅବସ୍ଥିତ ଲୁହା ଖଣିରୁ ଅଣାଯାଉଥିଲେହେଁ ଟାଟା ଲୁହା କାରଖାନା ଏ ଅଞ୍ଚଳର ବାହାରେ ଅଛି । କିନ୍ତୁ ଏହି ଷ୍ଟେଟ ଗୁଡ଼ିକ ଶିଳ୍ପ କାରଖାନାର ଉନ୍ନତ ଦିଗରେ ଦୃଢ ସଂକଳ୍ପ ହେଲେ ଓ ରାଷ୍ଟ୍ରସଂଘ ଗଠିତ ହେଲେ ସେମାନେ ଶିଳ୍ପ ସଂପଦରେ ଯେ ଖୁବ୍ ସମୃଦ୍ଧିଶାଳୀ ହେବେ ଏହା ନିଃସନ୍ଦେହରେ କୁହାଯାଇପାରେ । ଏବେ ମଧ୍ୟ ସମଗ୍ର ପୂର୍ବଗଡଜାତ ଗୁଡ଼ିକର ମୋଟ ରାଜସ୍ୱ ୪ । ୫ କୋଟି ମଧ୍ୟରେ ହେବ ଏବଂ ତାହା ଓଡ଼ିଶା ପ୍ରଦେଶର ରାଜସ୍ୱ ଅପେକ୍ଷା ବେଶୀ । କିନ୍ତୁ ଏହା ସୁନିଶ୍ଚିତ ଯେ ଶିଳ୍ପୋନ୍ନତି ସଙ୍ଗେ ସଙ୍ଗେ ଷ୍ଟେଟ ମାନଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ରାଜସ୍ୱ ଅଳ୍ପ କେତେ ବର୍ଷ ମଧ୍ୟରେ ୪ କିମ୍ବା ୫ ଗୁଣ ବଢିଯିବ । ଯଦି ବଡ ବଡ ଶିଳ୍ପ କାରଖାନା ଗୁଡ଼ିକ ଜାତୀୟ ସଂପତ୍ତି କରାଯାଇ ଷ୍ଟେଟ ହାତରେ ରହି ଷ୍ଟେଟ ଦ୍ୱାରା ପରିଚାଳିତ ହୁଏ, ତେବେ ଷ୍ଟେଟ ଗୁଡ଼ିକର ଆର୍ଥିକ ଅବସ୍ଥା ଆହୁରି ଅଧିକ ସ୍ୱଚ୍ଛଳ ହେବ । ଏହା କହିବା ବାହୁଲ୍ୟ ଯେ ସଂଘ-ବଦ୍ଧ ବିଭିନ୍ନ ଷ୍ଟେଟରେ ବାସ କରୁଥିବା ଲୋକେ ଏତଦ୍ୱାରା ଲାଭବାନ୍ ହେବାରୁ ସେମାନଙ୍କ ଜୀବନଯାପନ ପ୍ରଣାଳୀର ମାନ ବଢିଯିବ । ଏହା ମଧ୍ୟ ସୁନିଶ୍ଚିତ ଯେ

ଓଡ଼ିଶା ତଥା ଅନ୍ୟାନ୍ୟ ପ୍ରଦେଶଗୁଡ଼ିକ ସାମାଜିକ କାର୍ଯ୍ୟରେ ଜଣପିଛା ଯେତିକି ଖର୍ଚ୍ଚ କରନ୍ତି ପୂର୍ବଗଡ଼ଜାତ ଷ୍ଟେଟଗୁଡ଼ିକ ତଦପେକ୍ଷା ଅଧିକ ଖର୍ଚ୍ଚ କରିବେ । ସେମାନଙ୍କ ପ୍ରାକୃତିକ ବିଭବ ଯୋଗୁଁ ପୂର୍ବଗଡ଼ଜାତ ମଣ୍ଡଳ ଭାରତୀୟ କେନ୍ଦ୍ର ରାଷ୍ଟ୍ର-ସଂଯୁକ୍ତ ସଂସ୍ଥା ମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ଧନଶାଳୀ ହେବ । ଆର୍ଥିକ ଓ ଅର୍ଥନୀତିକ ଦୃଷ୍ଟିରୁ ତଥା ଶାସନ ତାନ୍ତ୍ରିକ ଓ ରାଜନୀତିକ ଦୃଷ୍ଟିରୁ ମଧ୍ୟ ପୂର୍ବ-ଗଡ଼ଜାତ ମଣ୍ଡଳର ଅଧିବାସୀମାନେ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ଦ୍ୱାରା ବିଶେଷ-ଭାବରେ ଉପକୃତ ହେବେ । ଇତିହାସ ଓ ଭୌଗୋଳିକ ଅବସ୍ଥାନର ପୋଷକତା ବିଚାରରେ ମଧ୍ୟ ଏହି ପୂର୍ବଗଡ଼ଜାତ-ସଂଘ ଗଠିତ ହେଲେ ତାହା କେନ୍ଦ୍ର ଭାରତୀୟ ମିଳିତ ରାଷ୍ଟ୍ର ସଙ୍ଘର ସଭ୍ୟ ହେବ । ଶେଷରେ ଏହି ସଂଘ ଗଠନ କରିବା ଦ୍ୱାରା ଏକତ୍ର ଅବସ୍ଥିତ ୪୪,୦୦୦ ବର୍ଗମାଇଲ ଆୟତନ ବିଶିଷ୍ଟ ଓ ୭୩,୦୦,୦୦୦ ରୁ ଅଧିକ ସଂଖ୍ୟକ ଲୋକ ବାସକରୁଥିବା ୩୦ ଗୋଟି ଓଡ଼ିଆ ରାଜ୍ୟର ଏକତ୍ରୀକରଣ ହୋଇ ପାରିବ । ଷ୍ଟେଟ ପ୍ରଜାଙ୍କ ପକ୍ଷରେ ଏହା ଅପେକ୍ଷା ସୁନ୍ଦରତର ଯୋଜନା ଓ ଅଧିକତର ସୁବିଧାଜନକ ବିଷୟ ଆଉ କଣ ହୋଇପାରେ ?



# ତୃତୀୟ ପରିଚ୍ଛେଦ ।

## ସମ୍ବଲପୁର ଅଞ୍ଚଳର ସଙ୍କଟ

### ଓଡ଼ିଶାର ପ୍ରାକୃତିକ ବିଭାଗ :—

ପ୍ରକୃତ ଓଡ଼ିଶାକୁ ମାଳଅଞ୍ଚଳ ଓ ଉପକୂଳବର୍ତ୍ତୀ ସମତଳ ପ୍ରଦେଶ— ଏହି ଦୁଇ ଭାଗରେ ବିଭକ୍ତ କରିଅଛି । ଇତିହାସ ପ୍ରକୃତିର ଅନୁବର୍ତ୍ତୀ । ତେଣୁ ଉଭୟ ପ୍ରାକୃତିକ ବିଭାଗର ଅଧିବାସୀଗଣଙ୍କ ସଂସ୍କୃତି ଓ ଜୀବନଯାପନ ପ୍ରଣାଳୀ ଭିନ୍ନ ଭିନ୍ନ ଭାବରେ ବିକାଶ ଲାଭ କରିଅଛି । ଉପକୂଳବର୍ତ୍ତୀ ସମତଳ ପ୍ରଦେଶରେ ଅବସ୍ଥିତ ଗଞ୍ଜାମ, ପୁରୀ, କଟକ, ବାଲେଶ୍ୱର – ଏହି ୪ ଟି ଜିଲ୍ଲା ମିଶି ପ୍ରାଚୀନ କଳିଙ୍ଗ ରାଜ୍ୟ ଗଠିତ ହୋଇଥିଲା । ସମ୍ବଲପୁର, ବୋଡ଼ାସମ୍ବର, ଝଡ଼ିଆଲ, ବିନ୍ଦ୍ରାନୁଆଗଡ଼, ଫୁଲଝର, ଓ ଦେଓଲୀ — ଏହି ଭୂଖଣ୍ଡ ଗୁଡ଼ିକ ମିଶି ଯେଉଁ ସମ୍ବଲପୁର ଅଞ୍ଚଳ ଗଠିତ, ତାହା ମାଳପ୍ରଦେଶରେ ଅବସ୍ଥିତ କୋଶଳ ରାଜ୍ୟର ହୃଦୟସ୍ୱରୂପୀ ପ୍ରାଚୀନ ପାଟଣାର ଅଂଶ ମାତ୍ର । ସିଂହଭୂମି, ଭଞ୍ଜଭୂମି, କୋରାପୁଟ, ଅନୁଗୁଳ ଓ କନ୍ଧମାଳ— ଏ ଅଂଚଳ ଗୁଡ଼ିକ ମଧ୍ୟ ନିଜର ସ୍ୱତନ୍ତ୍ର କୃଷ୍ଟି ନେଇ ଓଡ଼ିଶାର ମାଳପ୍ରଦେଶରେ ଅବସ୍ଥିତ ।

### ସମ୍ବଲପୁର ଅଞ୍ଚଳର ଅବସ୍ଥିତି, ଆୟତନ ଓ ଲୋକସଂଖ୍ୟା :—

ପୂର୍ବଗଡ଼ଜାତ ଗୁଡ଼ିକୁ ବାଦ୍ ଦେଲେ ସମ୍ବଲପୁର ଅଞ୍ଚଳର ଆୟତନ ପ୍ରାୟ ୮,୦୦୦ ବର୍ଗମାଇଲ ଓ ଏହାର ଲୋକସଂଖ୍ୟା ପ୍ରାୟ ୧୫ ଲକ୍ଷ । ସମ୍ବଲପୁର ଜିଲ୍ଲା ଏବେ ଓଡ଼ିଶା ପ୍ରଦେଶର ଅନ୍ତର୍ଗତ । ବୋଡ଼ାସମ୍ବର ଓ ଝଡ଼ିଆଲ ଜମିଦାରୀ ଦ୍ୱୟ ଏହି ଜିଲ୍ଲା ମଧ୍ୟରେ ଅବସ୍ଥିତ । ଛତିଶଗଡ ବିଭାଗର ରାୟପୁର ଜିଲ୍ଲାରେ ସମ୍ବଲପୁର ଅଞ୍ଚଳର ବିନ୍ଦ୍ରାନୁଆଗଡ଼, ଫୁଲଝର ଓ ଦେଓଲୀ ନାମକ ତିନୋଟି ଜମିଦାରୀ ରହିଅଛି ।

### ଅପ୍ରାକୃତିକ ଶାସନ-ବନ୍ଦୋବସ୍ତ :—

କୋଶଳ-କୃଷ୍ଟିଗତ ବିଭାଗ ମଧ୍ୟରେ ସମ୍ବଲପୁର ଗୋଟିଏ ପ୍ରଧାନ ଓଡ଼ିଆ ଭାଷୀ ଅଞ୍ଚଳ । କୋଶଳ ଅଞ୍ଚଳରୁ ପୂର୍ବଗଡ଼ଜାତି ଗୁଡ଼ିକ ସଂଗରେ ଏହାର ପ୍ରାକୃତିକ,

ଐତିହାସିକ ଓ କୃଷ୍ଟିଗତ ସମ୍ବନ୍ଧ ରହିଅଛି । ଏହାର ଭୌଗୋଳିକ ଅବସ୍ଥିତି ଏହାକୁ ପୂର୍ବଗଡ଼ଜାତମାନଙ୍କ ସଙ୍ଗରେ ଗୋଟାଏ ଅବଚ୍ଛିନ୍ନ ଅଞ୍ଚଳରେ ପରିଣତ କରିଅଛି । ସମ୍ବଲପୁରର ପ୍ରାକୃତିକ ଗଠନ ମଧ୍ୟ ପୂର୍ବଗଡ଼ଜାତ ମଣ୍ଡଳର ପ୍ରାକୃତିକ ଗଠନ ସଙ୍ଗେ ସମାନ । ପ୍ରାୟ ଶହେ ବର୍ଷ ପୂର୍ବେ ନିଜେ ସମ୍ବଲପୁର ଗୋଟାଏ ଷ୍ଟେଟ ଥିଲା; ତେଣୁ ପାରମ୍ପରିକତା ହିସାବରେ ସମ୍ବଲପୁର ପୂର୍ବଗଡ଼ଜାତ ସଙ୍ଗରେ ଏକତା-ସୂତ୍ରରେ ବନ୍ଧା । ଏବଂ ଯେଉଁ ୫ଟି ଜମିଦାରୀ କଥା ପୂର୍ବେ କୁହାଯାଇଛି ସେ ଗୁଡ଼ିକ ୧୮୬୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପାଟଣାର ଅଂଶବିଶେଷ ଥିଲା ଓ ତା ପରେ ୧୮୬୭ ପର୍ଯ୍ୟନ୍ତ ପ୍ରତ୍ୟେକଟା ପୃଥକ୍ ଷ୍ଟେଟ ରୂପେ ପରିଗଣିତ ହେଉଥିଲା । ଉପକୂଳବର୍ତ୍ତୀ ସମତଳ ପ୍ରଦେଶ ସହିତ ସମ୍ବଲପୁର ଅଞ୍ଚଳର କୌଣସି ସାମଞ୍ଜସ୍ୟ ନାହିଁ ଏବଂ ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲା ଓ ସମ୍ବଲପୁର ମଧ୍ୟରେ ଅନେକ ମାଇଲ ବିସ୍ତୃତ ଷ୍ଟେଟ ଅଞ୍ଚଳ ଥିବାରୁ ଏହା ଓଡ଼ିଶାଠାରୁ ପୃଥକ୍ ରହିଅଛି । ଓଡ଼ିଶାର ରାଜଧାନୀ କଟକରୁ ସମ୍ବଲପୁରକୁ ଆସିଲେ ଅନେକ ଦୂର ବୁଲି ବଙ୍ଗପ୍ରଦେଶ ବାଟେ କିମ୍ବା ମାନ୍ଦ୍ରାଜ ପ୍ରଦେଶ ବାଟେ ମଧ୍ୟପ୍ରଦେଶ ବାଟରେ ଆସିବାକୁ ହୁଏ । ସେହିପରି ବିନ୍ଦ୍ରାନୁଆଗଡ଼, ଫୁଲଝର ଓ ଦେଓଲୀ ଓଡ଼ିଆଭାଷୀ ଅଞ୍ଚଳରେ ଅବସ୍ଥିତ ଓ ଏ ଗୁଡ଼ିକର ରାୟପୁର ଜିଲ୍ଲା ସଙ୍ଗରେ କୌଣସି ସାମଞ୍ଜସ୍ୟ ନାହିଁ । ତେଣୁ ସମ୍ବଲପୁର ଅଞ୍ଚଳର ବର୍ତ୍ତମାନ ଶାସନ-ବନ୍ଦୋବସ୍ତ ଅପ୍ରାକୃତିକ ଓ ଅଦ୍ଭୁତ ।

## ଐତିହାସିକ ଭୂମିକା :—

ସମ୍ବଲପୁର ଅଞ୍ଚଳ କୋଶଳର ଅଂଶବିଶେଷ ଓ ୧୮୧୮ ପର୍ଯ୍ୟନ୍ତ ଅଠରଗଡ ରାଷ୍ଟ୍ରସଂଘର ଅନ୍ତର୍ଭୁକ୍ତ ଥିଲା । ୧୮୪୯ ପର୍ଯ୍ୟନ୍ତ ନିଜେ ସମ୍ବଲପୁର ମଧ୍ୟ ଥିଲା ଗୋଟାଏ ଷ୍ଟେଟ; ଏବଂ ପାଟଣାର କନିଷ୍ଠ ଶାଖା ରୂପେ ଅଠରଗଡ ରାଷ୍ଟ୍ରସଂଘର ଯୁକ୍ତ-ନେତୃତ୍ୱରେ ଅଂଶୀଦାର ହୋଇଥିଲା । ଏହି ଅଞ୍ଚଳର ଉପର୍ଯ୍ୟୁକ୍ତ ୫ଟି ଜମିଦାରୀ ମଧ୍ୟ ପାଟଣାର ଅଂଶ-ବିଶେଷରୂପେ ଅଠରଗଡ ରାଷ୍ଟ୍ର-ସଂଘର ଅନ୍ତର୍ଗତ ଥିଲା ଏବଂ ୧୮୬୭ ପର୍ଯ୍ୟନ୍ତ ସ୍ୱତନ୍ତ୍ର ଗଡଜାତ ରୂପେ ପରି-ଗଣିତ ହେଉଥିଲା । ଏହି ଅଞ୍ଚଳର ଓ କୋଶଳ ଓ ଛତିଶଗଡ ଅଞ୍ଚଳସ୍ଥ ଷ୍ଟେଟ ଗୁଡ଼ିକର ଇତିହାସ, ପାରମ୍ପରିକତା, ରୀତିନୀତି, ଯଗୁରବ୍ୟବହାର, ସାମାଜିକ ଗଠନ, ସଂସ୍କୃତି, ଦେଶର ପ୍ରାକୃତିକ ଗଠନ, ଉଦ୍ଭିଦ ଅଧିବାସି-

ଗଣଙ୍କ ଜୀବନଯାପନ ପ୍ରଣାଳୀ ପ୍ରଭୃତିରେ ବରାବର ସାମଞ୍ଜସ୍ୟ ରହି ଆସିଅଛି । ୧୮୪୯ ଖ୍ରୀଷ୍ଟାବ୍ଦରେ ସମ୍ବଲପୁର ବ୍ରିଟିଶ ସାମ୍ରାଜ୍ୟଭୁକ୍ତ କରାଯାଇଥିଲେହେଁ ୧୮୫୭ ଖ୍ରୀଷ୍ଟାବ୍ଦରେ ଏହାକୁ ପୁନର୍ବାର ଷ୍ଟେଟରେ ପରିଣତ କରିବାର ଚେଷ୍ଟା କରାଯାଇଥିଲା; ଏବଂ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ସିପାହୀ ବିଦ୍ରୋହ ଦମନ କରାଗଲା ପରେ ମଧ୍ୟ ଅନେକ ବର୍ଷ ଧରି ଏହି ଅଞ୍ଚଳରେ ବିଦ୍ରୋହ ମୁଣ୍ଡ ଟେକି ରହିଥିଲା । ଏପରି କି ସିପାହୀ ବିଦ୍ରୋହର ଶେଷ ଦମନ ପରେ ମଧ୍ୟ ସମ୍ବଲପୁରର ଲୋକେ ଏ ସଂପର୍କୀୟ ଆନ୍ଦୋଳନରୁ କ୍ଷାନ୍ତ ହୋଇ ନ ଥିଲେ ଏବଂ ୧୮୬୪ ରେ ଯେତେବେଳେ ଛତିଶଗଡ ବିଭାଗର କମିଶନର ସାହେବ ଗସ୍ତରେ ସମ୍ବଲପୁର ଆସିଥିଲେ, ସେମାନେ ସମ୍ବଲପୁର ଷ୍ଟେଟର ପୁନର୍ଗଠନ ଦାବୀ କରି ତାଙ୍କ ସଙ୍ଗରେ ସାକ୍ଷାତ୍ କରିଥିଲେ । ସ୍ଥାନୀୟ ସ୍ୱାତନ୍ତ୍ର୍ୟ-ଭାବ ଲୋକମାନଙ୍କ ହୃଦୟରେ କେତେ ଦୃଢଭାବରେ ବୃଦ୍ଧି ପାଇଥିଲା ଏବଂ ଷ୍ଟେଟର ପାରମ୍ପରିକତା କେତେ ବଳବତ୍ତର ଥିଲା ତାହା ଉପର୍ଯ୍ୟୁକ୍ତ ଘଟଣାବଳୀରୁ ସ୍ପଷ୍ଟ ଜଣାପଡେ ।

## ଅସୁବିଧା ଓ ଦୁର୍ଦ୍ଦଶା :—

କୋଶଳର ଅନ୍ୟାନ୍ୟ ଅଞ୍ଚଳରୁ ନିଜ ଇଚ୍ଛା କୁଠାରୁ କଣ୍ଠାରୁ ବଳପୂର୍ବକ ବିଚ୍ଛିନ୍ନ ହୋଇ ରହିବା ସମ୍ବଲପୁରବାସୀଙ୍କ ପକ୍ଷରେ କେତେ ଦୁଃସହ ହୋଇ-ଅଛି ତାହା କଥାରେ ପ୍ରକାଶ କରିବା ଅପେକ୍ଷା କଳ୍ପନା ଦ୍ୱାରା ବେଶ୍ ବୁଝା-ଯାଇପାରେ । ଏକ ପ୍ରଦେଶରୁ ପ୍ରଦେଶାନ୍ତରକୁ ପରିବର୍ତ୍ତିତ ହେବାଦ୍ୱାରା ସମ୍ବଲପୁରକୁ ସର୍ବଦା କୌଣସି ଗୋଟାଏ ପ୍ରଦେଶର ସୁଦୂର ପ୍ରାନ୍ତରେ ରହି-ବାକୁ ପଡୁଛି ଓ ସମ୍ବଲପୁରବାସୀ ଏହି ପ୍ରକାର ଶାସନ ପରିବର୍ତ୍ତନ ଦ୍ୱାରା ବିଶେଷ କିଛି ଉପକାର ପାଇ ପାରୁ ନାହାନ୍ତି । ସେମାନଙ୍କ ଅବସ୍ଥା ଏକ-ସ୍ଥାନରୁ ସ୍ଥାନାନ୍ତରକୁ ପଦକ୍ଷିପ୍ତ ଠିକ୍ ଗୋଟାଏ ଫୁଟବଲର ଅବସ୍ଥା ସଙ୍ଗେ ସମାନ । ଅଧିକ ମଧ୍ୟ ଏହି ପରିବର୍ତ୍ତନ ଯୋଗୁଁ ନିଜର ପ୍ରାକୃତିକ ଅବସ୍ଥିତିରୁ ବିଚ୍ଛିନ୍ନ ହୋଇ ସେମାନେ ପ୍ରତ୍ୟେକ କ୍ଷେତ୍ରରେ ଗୋଟାଏ ଉପେକ୍ଷା ଓ ଅବହେଳିତ ଶିଶୁର ବ୍ୟବହାର ପାଇ ଆସିଛନ୍ତି । ଏବେ ମଧ୍ୟ ସମ୍ବଲପୁର ଅନୁନ୍ନତ ହସ୍ତମୁଦମାହାଲ ରୂପେ ପରିଗଣିତ ଏବଂ ପ୍ରାଦେଶିକ ଶାସନ ବ୍ୟାପାରରେ ସମ୍ବଲପୁରବାସୀଙ୍କ ମତରେ କୌଣସି ଗୌରବ ନାହିଁ ।

## ସମ୍ବଲପୁର ସଂକଟ :—

ପ୍ରାକୃତିକ ଓ କୃଷ୍ଟିଗତ ସାମଞ୍ଜସ୍ୟ, ଇତିହାସ ଓ ପାରମ୍ପରିକତା, ଭୌଗଳିକ ସାମୀପ୍ୟ ଓ ଶାସନଗତ ସୁବିଧା—ଏହି ସବୁର ମୋହ ଯେ ସମ୍ବଲପୁର ଅଞ୍ଚଳକୁ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ଆଡ଼କୁ ଆକର୍ଷଣ କରିବ ତାହା ସ୍ୱାଭାବିକ । ପ୍ରସ୍ତାବିତ ପୂର୍ବଗଡ଼ଜାତ-ରାଷ୍ଟ୍ରସଂଘର ଅର୍ଥନୈତିକ ଦଳ-ବଳ ଓ ଆର୍ଥିକ ଦୃଢ଼ତା ଏବଂ ଏହି ରାଷ୍ଟ୍ରସଂଘରେ ମିଶିଲେ ଯେଉଁ ଆର୍ଥିକ ଉନ୍ନତି ହେବ ଓ ତାରି ଫଳରେ ଜୀବନଯାପନ ପ୍ରଣାଳୀର ମାନବୃଦ୍ଧି ହେବାର ଯେଉଁ ପ୍ରୀତିପ୍ରଦ ସମ୍ଭାବନା ଅଛି—ଏ ସବୁର ବିବେଚନା ଲଘୁ ବକ୍ତୃତା ଦ୍ୱାରା ଉଡାଇ ଦିଆଯାଇ ନ ପାରେ । ସ୍ଥାନୀୟ ସ୍ୱାଧିକାରର ପୁନରୁଦ୍ଧାର ଏବଂ ନିଜର ଭାଗ୍ୟ ନିଜେ ଗଠନ କରିବାର ଓ ନିଜର ଇଚ୍ଛା ଓ ଗତାନୁଗତିକ ପନ୍ଥା ଅନୁସାରେ ନିଜର ଘର ନିଜେ ଚଳାଇବାର ସ୍ୱାଧୀନତା-ଏ ସବୁ ମଧ୍ୟ ପରିପକ୍ୱ ଚିନ୍ତାର ବିଷୟୀଭୂତ । ସର୍ବୋପରି ନିଜ ଜାତି କୁଟୁମ୍ବର ଲୋକଙ୍କ ସଙ୍ଗରେ ପୁନର୍ମିଳନର ସୁବିଧା ଓ ସୁଯୋଗ, ପୂର୍ବଗଡ଼ଜାତ ଅଞ୍ଚଳ ମଧ୍ୟରେ ଥିବା କୋଶଳର ଅଧିକାଂଶ ସହ ପୁନର୍ମିଳନ; ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ଭିତରେ ଗୋଟାଏ ଅବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳ ଗଠନ, ଅଧୁନା ଭିନ୍ନ ଭିନ୍ନ ଶାସନାନ୍ତର୍ଭୁକ୍ତ ଓଡ଼ିଆଭାଷୀ ଅଞ୍ଚଳ ଗୁଡ଼ିକ ମଧ୍ୟରୁ କେତେକର ପୁନର୍ବାର ଏକତ୍ରୀକରଣ; ଏବଂ ସମଗ୍ର କୋଶଳ ଅଞ୍ଚଳ ଗୁଡ଼ିକୁ ଘନିଷ୍ଠ ଭାବରେ ଏକ ଶାସନାଧୀନ କରିବା ଦ୍ୱାରା କୋଶଳର କୃଷ୍ଟିଗତ ଏକତାର ପୁନଃପ୍ରତିଷ୍ଠା—ସମ୍ବଲପୁର ବର୍ତ୍ତମାନ ଏ ବିଷୟ ଗୁଡ଼ିକର ଯେଉଁ ମୀମାଂସାର ସମ୍ମୁଖୀନ, ତାହା ସମ୍ବଲପୁର ଇତିହାସର ଗୋଟିଏ ସୁମହତ୍ ଓ ଗରିଷ୍ଠ ଘଟଣା । ଅଧୁନା ସମ୍ବଲପୁର ଯେଉଁ ସଙ୍କଟର ସନ୍ଧିସ୍ଥଳରେ ପଡ଼ିଅଛି, ସେଥିରୁ ନିସ୍ତାର ପାଇବାର କେବଳ ଦୁଇଟା ବାଟ ଅଛି—ପ୍ରଥମଟି ହେଉଛି ପୂର୍ବଗଡ଼ଜାତ ରାଷ୍ଟ୍ରସଂଘରେ ଯୋଗଦାନ ଓ ଅନ୍ୟଟି ଓଡ଼ିଶା ସହ ମିଶ୍ରଣ । ସମ୍ବଲପୁରକୁ ଏହି ଦୁଇଟି ମଧ୍ୟରୁ ଯେ କୌଣସିଟିକୁ ବାଛିନେବାକୁ ପଡ଼ିବ । ଏକ ପକ୍ଷରେ ସମୃଦ୍ଧି, ବନ୍ଧୁତା, ଶାସନଗତ ସୁବିଧା ଓ ସୁଯୋଗ ଓ ଜାତି କୁଟୁମ୍ବର ପୁନର୍ମିଳନ, ଏବଂ ପକ୍ଷାନ୍ତରେ ଅସ୍ୱାଭାବିକ ସମ୍ମିଶ୍ରଣ । ଏକପକ୍ଷରେ ସମାନତା ଓ ଭାଇର ସାଦର ଆବାହନ; ଅନ୍ୟ ପକ୍ଷରେ ଅଧୀନତା ଓ ହତାଦର । ରକ୍ତର ଡାକ କଣ ପାଣିର ଡାକ ଅପେକ୍ଷା ଗାଢ଼ତର ହେବ ? ଏ ପ୍ରଶ୍ନର ଉତ୍ତର ସମ୍ବଲପୁରବାସୀ ଦେବେ ।

**ରାଜ୍ୟର ରାଜଧାନୀ କି ମଫସଲିଆ ସହର :—**

ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ଗଠନ ହେଲାପରେ ତାର ରାଜଧାନୀ ହେବା ସକାଶେ କେଉଁ ସ୍ଥାନ ଉପଯୁକ୍ତ ଏ ପ୍ରଶ୍ନ ନିଶ୍ଚୟ ଉଠିବ । ଶାସନ ପରିଷଦ୍ ଓ ବ୍ୟବସ୍ଥାପକ ସଭା ଗୃହ, ରାଷ୍ଟ୍ରସଂଘ ଅଧିନାୟକ ( President )ଙ୍କ ବାସୋପଯୋଗୀ ପ୍ରାସାଦ, ଅନ୍ୟାନ୍ୟ ସରକାରୀ ଗୃହାଦି; ମନ୍ତ୍ରିବର୍ଗ, ଉଚ୍ଚପଦାଧିକାରୀଗଣ, ବଡ଼ ବଡ଼ କାର୍ଯ୍ୟକାରୀ ଅଫିସର ଗଣ, ହାଇକୋର୍ଟ ବିଚାରପତି ଗଣ — ଏମାନଙ୍କ ଓ ଅନ୍ୟାନ୍ୟ ବିଭିନ୍ନ ଶ୍ରେଣୀର ଅମଲା ଅଫିସରଙ୍କ ବାସଭବନ ପାଇଁ ପ୍ରଚୁର ଓ ପ୍ରଶସ୍ତ ସ୍ଥାନ ଥିବା ଭଳିଆ ଗୋଟିଏ ବଡ଼ ସହରରେ ନିଶ୍ଚୟ ଏହି ନୂତନ ରାଷ୍ଟ୍ରସଂଘର ରାଜଧାନୀ ସ୍ଥାପିତ ହେବ । ସେକ୍ରେଟେରିଏଟ୍ ଓ ଅନ୍ୟାନ୍ୟ ଅଫିସ ଘର, ହାଇକୋର୍ଟ ଓ ଅନ୍ୟାନ୍ୟ ଅଦାଲତ ଘର, ଯାଦୁଘର, ପୁସ୍ତକାଳୟ, ଠେନାଗାର, କ୍ଲବ୍ ଘର, ସିନେମା ଘର, ଟାଉନ୍ ହଲ, ବିଶ୍ୱବିଦ୍ୟାଳୟ, ଆଇନ କଲେଜ, ମେଡ଼ିକେଲ କଲେଜ, ଇଞ୍ଜିନିଅରିଂ କଲେଜ, ବିଜ୍ଞାନ ଓ ଆର୍ଟ କଲେଜ, ସୂକ୍ଷ୍ମଶିଳ୍ପ ଓ ସଂଗୀତ କଲେଜ, ଶିଳ୍ପ ବିଜ୍ଞାନାଳୟ ଓ ଶିଳ୍ପ ଶିକ୍ଷାଳୟ, ନାନାପ୍ରକାର ଟ୍ରେନିଂ କଲେଜ, ସ୍କୁଲ, ଛାତ୍ରାବାସ, ଗବେଷଣା ମନ୍ଦିର, କେନ୍ଦ୍ରୀୟ କୃଷି ଫାର୍ମ ଓ କୃଷି ଶିକ୍ଷାଳୟ, କେନ୍ଦ୍ରୀୟ ଲାଇଭ୍ଷ୍ଟକ୍ ଫାର୍ମ ଓ ଶିକ୍ଷାଳୟ, ବୈଜ୍ଞାନିକ ଗବେଷଣା ମନ୍ଦିର, ବେତାର ଅନୁଷ୍ଠାନ, ହୋଟେଲ, ଅବସର ବିନୋଦନାଳୟ, ପାର୍କ, ଖେଳପଡ଼ିଆ, ଶିଳ୍ପ, ବାଣିଜ୍ୟ ଓ ଆବାସଭୂମି— ଏ ସବୁ ସକାଶେ ପ୍ରଶସ୍ତ ସ୍ଥାନ ଆବଶ୍ୟକ । ଐତିହାସିକ ଖ୍ୟାତି ଓ ଭୌଗୋଳିକ ଅବସ୍ଥିତି ଯୋଗୁଁ ସମ୍ବଲପୁର କୋଶଳର ହୃତ୍‌ପିଣ୍ଡ ଓ ପୂର୍ବଗଡ଼ଜାତ ଅଞ୍ଚଳର କେନ୍ଦ୍ରସ୍ଥାନୀୟ । ତେଣୁ ଏହା ସ୍ୱାଭାବିକ ଯେ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘର ରାଜଧାନୀ ହେବାର ଆଦର୍ଶ ସ୍ଥାନ ରୂପେ ତାହା ସମସ୍ତଙ୍କର ମନୋଯୋଗ ଆକର୍ଷଣ କରିବ । କେହି କେହି ଐତିହାସିକ କୋଶଳଗୁପ୍ତ ସାମ୍ରାଜ୍ୟର ରାଜଧାନୀ ଯଯାତି ନଗରକୁ ଏହି ମହାନଦୀତୀରସ୍ଥ ସମ୍ବଲପୁର ନଗରୀରେ ପରିଚିତ କରିଅଛନ୍ତି । ପୁନର୍ମିଳିତ କୋଶଳ ଯେଉଁ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘର ଅନ୍ତର୍ଭୁକ୍ତ ତାର ରାଜଧାନୀ ହେବାର ଉପଯୁକ୍ତ ବିବେଚିତ ହେବାପାଇଁ ଇତିହାସ କିମ୍ବା ପ୍ରକୃତି ଦ୍ୱାରା ପରିଚାଳିତର ସମ୍ମ ପରିଚିତ ସମ୍ବଲପୁର ଅପେକ୍ଷା ଅଧିକ ଉପଯୁକ୍ତ କେଉଁ ସ୍ଥାନ ନିର୍ମାଣ କରି ପାରିଥାନ୍ତା ? କିନ୍ତୁ ସମ୍ବଲପୁର ଯଦି ଓଡ଼ିଶା ପ୍ରଦେଶରେ ରହିଯାଏ ଓ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘରେ ନ ମିଶେ, ତାହା ଏହି ରାଷ୍ଟ୍ରସଂଘର ରାଜଧାନୀ

ହୋଇ ପାରିବନାହିଁ । ସମ୍ବଲପୁର ପୂର୍ବଗଡ଼ଜାତ ରାଷ୍ଟ୍ରସଂଘର ରାଜଧାନୀ ଓ ସଂଘାତ୍ମକ ସମସ୍ତ ପ୍ରକାର କାର୍ଯ୍ୟକଳାପର କେନ୍ଦ୍ର ହୋଇ "ବୃହତ୍ତର ସମ୍ବଲପୁର"ରେ ପରିଣତ ହେବ କି ନା କିମ୍ବା ପୂର୍ବଗଡ଼ଜାତସଂଘରୂପୀ ମହାସାଗର ପରିବେଷ୍ଟିତ ଦ୍ୱୀପ ଭଳିଆ ଥାଇ ଅନ୍ୟ ଗୋଟାଏ ପ୍ରଦେଶରୁ ଦୂରବର୍ତ୍ତୀ ଜିଲ୍ଲାର ମଫସଲିଆ ତୃତୀୟ ଶ୍ରେଣୀର ସାମାନ୍ୟ ଗୋଟାଏ ସହର ହୋଇ ରହିଥିବ, ତାହା ସମ୍ବଲପୁରବାସୀଙ୍କ ଇଚ୍ଛା ଉପରେ ନିର୍ଭର କରେ ।

## ସମ୍ବଲପୁର ଅଞ୍ଚଳର ଉନ୍ମୁକ୍ତ ପନ୍ଥା :—

ପୂର୍ବୋକ୍ତ ଯେଉଁ ୫ଟି ଜମିଦାରୀ ୧୮୬୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପାଟଣାର ଅନ୍ତର୍ଭୁକ୍ତ ଥିଲା ସେ ସବୁର ଅଧିବାସିଗଣ ବହୁକାଳବ୍ୟାପୀ ପାରମ୍ପରିକ ଓ ଐତିହାସିକ ସମ୍ବନ୍ଧ ବିବେଚନାରେ ଏବଂ ସାମାଜିକ ସମ୍ବନ୍ଧ, ରୀତିନୀତି, ଭାଷା ଓ କୃଷ୍ଟିଗତ ଏକତା ଦୃଷ୍ଟିରେ ପୁନର୍ବାର ପାଟଣା ସଙ୍ଗେ ମିଶି ତଦୀୟ ସ୍ଥାନୀୟ ସ୍ୱାଧୀନତାର ଅଂଶୀଦାର ହୋଇ ପୂର୍ବଗଡ଼ଜାତ ସଂଘରେ ଯୋଗ ଦେଇ ପାରନ୍ତି । ସମ୍ବଲପୁର ମଧ୍ୟ ସେହିପରି ନୈତିକ, ରାଜ୍ୟ ବ୍ୟବସ୍ଥା ସମ୍ବନ୍ଧୀୟ ଓ ଆଇନସମ୍ମତ କାରଣରୁ ପାଟଣାକୁ ପ୍ରତ୍ୟାବର୍ତ୍ତିତ ହୋଇପାରେ । କିନ୍ତୁ ଏହି ଜମିଦାରୀ ଗୁଡ଼ିକ ଯଦି ଅଲଗା ରହିବାକୁ ଇଚ୍ଛା କରନ୍ତି, ତେବେ ପକ୍ଷାନ୍ତରରେ ସେମାନେ ପୂର୍ବଗଡ଼ଜାତ ସଂଘର କେନ୍ଦ୍ର ସରକାର ତଳେ ଓ ତଦ୍ୱାରା ପ୍ରତ୍ୟକ୍ଷ ଭାବରେ ଶାସିତ ଅଞ୍ଚଳରୂପେ ରହିପାରନ୍ତି । ଏହି ଅଞ୍ଚଳର ଲୋକେ ଯେଉଁ ସିଦ୍ଧାନ୍ତରେ ଉପନୀତ ହେବେ ତାହା କାର୍ଯ୍ୟରେ ପରିଣତ କରିବା ପଥରେ କୌଣସି ଆଇନଗତ ବାଧା ବା ପ୍ରତିବନ୍ଧକ ରହିବା ଉଚିତ ନୁହେଁ । ଐତିହାସିକ, ଭୌଗୋଳିକ, ଆଇନଗତ ଓ ନୈତିକ ଏବଂ କୃଷ୍ଟିଗତ ଏକତା ଓ ଶାସନଗତ ସୁବିଧା ହେତୁରୁ ଶାସନ ବିଧାୟକ ସଭା, ଯେଉଁ ଅଞ୍ଚଳର ଅଧିବାସିଗଣ ବହୁଦିନାବଧି ନ୍ୟାଯ୍ୟ ବ୍ୟବହାରରୁ ବଞ୍ଚିତ ହୋଇଅଛନ୍ତି, ସେମାନଙ୍କ ଇଚ୍ଛା ଗ୍ରହଣ କରିବାକୁ ବାଧ୍ୟ ହେବ । କିନ୍ତୁ ସେଥିପାଇଁ ଜନମତ ଗଠନ କରି ଏକ ସ୍ୱରରେ ସମ୍ମିଳିତ ଇଚ୍ଛା ଜ୍ଞାପନ କରିବାକୁ ହେବ । ପୂର୍ବଗଡ଼ଜାତ ମଣ୍ଡଳର ଅଧିବାସିଗଣ ଏ ଅଞ୍ଚଳକୁ ହୃତଭ୍ରାତାର ପୁନଃ-ପ୍ରତ୍ୟାବର୍ତ୍ତନ ସ୍ୱରୂପ ସାଦରେ ଗ୍ରହଣ କରିବେ । ବହୁକାଳବ୍ୟାପୀ ବିଚ୍ଛେଦ ପରେ କୋଶଳବାସିଗଣ ସେମାନଙ୍କ ଜ୍ଞାତି କୁଟୁମ୍ବଙ୍କ ସଙ୍ଗେ ପୁନର୍ମିଳିତ ହୋଇ ଆନନ୍ଦିତ ହେବେ । ସମଗ୍ର ପୂର୍ବଗଡ଼ଜାତ ମଣ୍ଡଳର ଅଧିବାସିଗଣ ଓ ନ୍ୟାୟପରାୟଣ ପ୍ରତ୍ୟେକ ଭାରତ-

ବାସୀ ମଧ୍ୟ ସମ୍ବଲପୁରବାସୀଙ୍କ ଏହି ଦାବୀକୁ ସମର୍ଥନ କରି ପୂର୍ଣ୍ଣ ସହାନୁଭୂତି ଦେଖାଇବେ ।

## ସୁଯୋଗ କେବଳ ଥରେ ଆସେ :—

ନେପୋଲିୟନ୍ ଏହା କହିଥିବା ପ୍ରବଚନ ଏବଂ ଏହି ଉକ୍ତିର ସତ୍ୟତା ମଧ୍ୟ ସ୍ୱତଃ-ସିଦ୍ଧ ଯେ ସୁଯୋଗ ଥରେ ମାତ୍ର ପ୍ରତ୍ୟେକଙ୍କ ଦ୍ୱାର ଦେଶରେ ଆଘାତ କରେ ଏବଂ ତାର ସଦ୍‌ବ୍ୟବହାର କେବଳ ଜ୍ଞାନୀ ଲୋକେ କରିଥାନ୍ତି । ଐତିହାସିକ କାରଣବଶତଃ ଅଥବା ଶାସନ ସମ୍ବନ୍ଧୀୟ ସୁବିଧା ନେଇ ଯେଉଁ ପ୍ରଦେଶ ଓ ଜିଲ୍ଲାଗୁଡ଼ିକର ସୀମାରେଖା ଯଦୃଚ୍ଛାକ୍ରମେ ନିରୂପିତ ହୋଇଅଛି ତାହା ନିକଟ ଭବିଷ୍ୟତରେ ଯଥାବିଧି ପୁନର୍ବାର ଠିକ୍ ଯାଇ ପୁନରାଲୋଚିତ ହେବ । ସମ୍ବଲପୁରର ଇତିହାସରେ ଏପରି ଗୋଟିଏ ସୁଯୋଗ ଆଉ କେବେ ଆସିବାର ସମ୍ଭାବନା ମୋଟେ ନାହିଁ । ଯଦି ସମ୍ବଲପୁର ଏହି ସୁଯୋଗ ହରାଏ, ତେବେ ତାକୁ ଚିରଦିନପାଇଁ ଅନୁତାପ କରିବାକୁ ପଡ଼ିବ । ତେଣୁ ସମ୍ବଲପୁରର ସ୍ୱାଧୀନଚେତା ଶିକ୍ଷିତମଣ୍ଡଳୀ ଓ ନେତାମାନଙ୍କ ଏକାନ୍ତ କର୍ତ୍ତବ୍ୟ ଯେ ସେମାନେ ଏହି ସୁଯୋଗର ସୁବିଧା ହୃଦୟଙ୍ଗମ କରି ଉଦ୍‌ବୁଦ୍ଧ ହେବେ ଏବଂ ଏକତାବଦ୍ଧ ଭାବରେ ଉଦ୍‌ଯୋଗମୂଳକ ଆନ୍ଦୋଳନ ଦ୍ୱାରା ଜଗତ୍ ସମକ୍ଷରେ ସମ୍ବଲପୁରବାସୀଙ୍କର ଦାବୀ ସ୍ପଷ୍ଟଭାବରେ ଉପସ୍ଥାପିତ କରିବେ ।

## ପୂର୍ବ ଗଡ଼ଜାତ ରାଷ୍ଟ୍ରସଂଘରେ ସମ୍ବଲପୁର ଯୋଗଦେଲେ ସଂଯୁକ୍ତ ରାଷ୍ଟ୍ରସଂଘର ଆୟତନ ଓ ଲୋକସଂଖ୍ୟା :—

ସମ୍ବଲପୁର ଅଞ୍ଚଳ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘରେ ଯୋଗ ଦେଲେ ସମ୍ମିଳିତ ଅଞ୍ଚଳ ୬୮,୦୦୦ ବର୍ଗମାଇଲ ଆୟତନ ଓ ୯୫,୦୭,୦୦୦ ଲୋକସଂଖ୍ୟାବିଶିଷ୍ଟ ଏକ ଅବିଚ୍ଛିନ୍ନ ଭୂଖଣ୍ଡରେ ପରିଣତ ହେବ । ଏହି ରାଷ୍ଟ୍ରସଂଘଗତ ଓଡ଼ିଆଭାଷୀ ଅଞ୍ଚଳର ଆୟତନ ୫୨,୦୦୦ ବର୍ଗମାଇଲ ଓ ଲୋକସଂଖ୍ୟା ୭୯,୦୦,୦୦୦ । ତେଣୁ ଗୋଟିଏ ସୁବିସ୍ତୀର୍ଣ୍ଣ ଓଡ଼ିଆଭାଷୀ ଅଞ୍ଚଳ ଏବଂ ଗୋଟିଏ ଏକଜାତୀୟ ଓ ସମଭାବାପନ୍ନ ଜନସଂଘ ଏକତ୍ରିତ ଓ ସମ୍ମିଳିତ ହୋଇ ପାରିବେ ।

## କନ୍ଧମାଳ :–

କନ୍ଧମାଳର ଆୟତନ ୮୦୦ ବର୍ଗମାଇଲ; ଏବଂ ଏହାର ଅଧିବାସିଗଣ ଜାତିରେ କନ୍ଧ । ପ୍ରାୟ ୧୦୦ ବର୍ଷ ପୂର୍ବେ କନ୍ଧମାଳ ବୌଦ୍ଧ ଷ୍ଟେଟର ଅନ୍ତର୍ଭୁକ୍ତ ଥିଲା । ଏହି ଅଞ୍ଚଳର ଅଧିବାସିଗଣଙ୍କ ସହିତ ନିକଟବର୍ତ୍ତୀ ଷ୍ଟେଟମାନଙ୍କରେ ବାସ-କରୁଥିବା କନ୍ଧମାନଙ୍କର ଘନିଷ୍ଠ ସମ୍ବନ୍ଧ ବିଦ୍ୟମାନ ରହିଅଛି ଏବଂ ବୌଦ୍ଧ ଷ୍ଟେଟପ୍ରତି ମଧ୍ୟ ସେମାନଙ୍କର ପ୍ରଗାଢ ମମତା ରହିଅଛି । ଏହି ଅଞ୍ଚଳର ବର୍ତ୍ତମାନ ଅବସ୍ଥିତି ବଡ ଅସଙ୍ଗତ; କାରଣ ବୌଦ୍ଧ ଷ୍ଟେଟ କନ୍ଧମାନଙ୍କ ଉପରେ ଥିବା ନିଜ ଅଧିକାର ତ୍ୟାଗ କରି ତାହା ଇଂରାଜମାନଙ୍କ ହାତରେ ଅର୍ପଣ କରି ନାହାନ୍ତି କିମ୍ବା ଏହି ଅଞ୍ଚଳ ବ୍ରିଟିଶ ସାମ୍ରାଜ୍ୟରେ ସାମିଲ କରାଯାଇନାହିଁ । ଆଇନ ଅନୁସାରେ ଏହା ଅଦ୍ୟାପି ବୌଦ୍ଧ ଷ୍ଟେଟର ଅଧିକାରଗତ । ତେଣୁ ଶାସନଗତ ସୁବିଧା ଦୃଷ୍ଟିରେ କନ୍ଧମାଳ ଅଞ୍ଚଳ ବୌଦ୍ଧ ଷ୍ଟେଟକୁ ଫେରାଇ ଦେବା ବାଞ୍ଛନୀୟ । ଏହା ଯଦି କାର୍ଯ୍ୟରେ ପରିଣତ କରାଯାଏ ପୂର୍ବଗଡଜାତ ସଙ୍ଘର ଆୟତନ ଓ ଲୋକସଂଖ୍ୟା ତାର ଅନୁପାତରେ ବୃଦ୍ଧି ପାଇବ । ସିଂହଭୂମିରେ ଥିବା କୋହ୍ଲାନ୍ ଅଞ୍ଚଳର ସମସ୍ୟା ଠିକ୍ ଏହିପରି ଏବଂ ତାହାର ସମାଧାନ ମଧ୍ୟ ହେବା ଆବଶ୍ୟକ ।

# ଚତୁର୍ଥ ପରିଚ୍ଛେଦ ।

# ଉପସଂହାର

## ପୂର୍ବ ଗଡ଼ଜାତ ରାଷ୍ଟ୍ରସଂଘ ଗଠିତ ହେଲେ ଷ୍ଟେଟଗୁଡ଼ିକ କିପରି ଉପକୃତ ହେବେ :—

ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ସମଷ୍ଟିଗତ ଷ୍ଟେଟ ଗୁଡ଼ିକର ପ୍ରଭୂତ ମଙ୍ଗଳ ବିଧାନ କରିବ; କାରଣ କ୍ଷୁଦ୍ର କ୍ଷୁଦ୍ର ଷ୍ଟେଟ ଗୁଡ଼ିକ ବ୍ୟକ୍ତିଗତଭାବରେ ଯେଉଁ ଶାସନ ସଂକ୍ରାନ୍ତ ପ୍ରତିବନ୍ଧକର ସମ୍ମୁଖୀନ ହୁଅନ୍ତି, ତାହା ରାଷ୍ଟ୍ରସଂଘ ସ୍ୱୀୟ ସମ୍ମିଳିତ ଶକ୍ତିଦ୍ୱାରା ସହଜରେ ଅତିକ୍ରମ କରିପାରିବ ଏବଂ କେନ୍ଦ୍ର ଯୋଜନା ଦ୍ୱାରା ପ୍ରାକୃତିକ ସଂପଦର ପୂର୍ଣ୍ଣ ବିକାଶ ବିଧାନ କରିପାରିବ । ଆଉ ମଧ୍ୟ ଯେଉଁ କାର୍ଯ୍ୟସବୁ ଷ୍ଟେଟମାନଙ୍କ ବ୍ୟକ୍ତିଗତ କ୍ଷମତାର ବହିର୍ଭୂତ ସେ ସବୁର ବ୍ୟବସ୍ଥା ମଧ୍ୟ କରିପାରିବ । ପୂର୍ବଗଡ଼ଜାତର ଆର୍ଥନୀତିକ ଓ ଆର୍ଥିକ ଅବସ୍ଥାର ଦୃଢ଼ତା ଓ ସ୍ଥିରତା ଯୋଗୁଁ ଅନ୍ୟାନ୍ୟ ସଂହତିର ଲୋକମାନଙ୍କ ଅପେକ୍ଷା ସଂଘବଦ୍ଧ ଷ୍ଟେଟବାସୀମାନଙ୍କ ଜୀବନ-ପ୍ରଣାଳୀର ମାନ ଖୁବ୍ ବୃଦ୍ଧି ପାଇବ ଏବଂ ଅନ୍ୟାନ୍ୟ ଅନେକ ସଂହତି ଅପେକ୍ଷା ସାମାଜିକ କାର୍ଯ୍ୟରେ ମଧ୍ୟ ଅଧିକ ଖର୍ଚ୍ଚ କରାଯାଇ ପାରିବ । ରାଷ୍ଟ୍ରସଂଘ ସମଷ୍ଟିଗତ ଷ୍ଟେଟମାନଙ୍କର ସ୍ୱାତନ୍ତ୍ର୍ୟ ବା ବ୍ୟକ୍ତିତ୍ୱ ନଷ୍ଟ ନ କରି କେନ୍ଦ୍ରୀଭୂତ ଶାସନର ସମସ୍ତ-ପ୍ରକାର ଉପକାରିତା ଅନୁଭବ କରିବ ଓ ସଙ୍ଗେ ସଙ୍ଗେ ଷ୍ଟେଟବାସୀମାନଙ୍କୁ ସ୍ଥାନୀୟ ଦେଶପ୍ରୀତି ପ୍ରଦର୍ଶନରେ ଉତ୍ସାହ ଓ ସ୍ଥାନୀୟ ସମସ୍ତପ୍ରକାର ବ୍ୟାପାରରେ କର୍ତ୍ତୃତ୍ୱ ପ୍ରଦାନ କରିବ । ରାଷ୍ଟ୍ରସଂଘ ମଧ୍ୟରେ ଅତି ବଡ଼ କୌଣସି ଷ୍ଟେଟ ନ ଥିବାରୁ ସଂଘ-ବଦ୍ଧ କୌଣସି ଷ୍ଟେଟ ଅନ୍ୟ ଷ୍ଟେଟ ଉପରେ ଅଯଥା ଆଧିପତ୍ୟ ବିସ୍ତାର କରି ପାରିବ-ନାହିଁ ଏବଂ ପ୍ରତ୍ୟେକ ଷ୍ଟେଟ ନିଜର କର୍ତ୍ତୃତ୍ୱ ପରିଚାଳନାର ପ୍ରକୃଷ୍ଟ ସୁବିଧା ପାଇ-ପାରିବେ । ସମଷ୍ଟିଗତ କୌଣସି ଷ୍ଟେଟ ଅନ୍ୟ ଷ୍ଟେଟକୁ ଶୋଷଣନୀତି କବଳରେ ପକାଇ ପାରିବେ ନାହିଁ; କିମ୍ବା ତାହାର ଅଧିକାରରେ ଅଯଥା ହସ୍ତକ୍ଷେପ କରିବାର ସୁଯୋଗ ପାଇ ପାରିବେ ନାହିଁ; ଅଥବା ଅନ୍ୟର ସ୍ୱାର୍ଥକୁ ନିଜ ସ୍ୱାର୍ଥ ଅପେକ୍ଷା ନିମ୍ନତର ସ୍ଥାନ ଦେଇ ପାରିବେ ନାହିଁ । ପ୍ରସ୍ତାବିତ ରାଷ୍ଟ୍ରସଂଘରେ ଉପରୋକ୍ତ କୌଣସି ବାଧା

ଆଶଙ୍କା ନାହିଁ । ସମଷ୍ଟିଗତ ଭୂଖଣ୍ଡ ଗୁଡ଼ିକର ଆକାର ପ୍ରାୟ ସମାନ ଥିବାରୁ ଏହା ଗୋଟିଏ ସମସ୍ତରଯୁକ୍ତ ସଂଘରେ ପରିଣତ ହେବ । ସଂଘବଦ୍ଧ ଷ୍ଟେଟବାସିଗଣ ସ୍ଥାନୀୟ ଓ କେନ୍ଦ୍ର ଶାସନ ସଂକ୍ରାନ୍ତ ବ୍ୟାପାରରେ ସହଯୋଗ କରି ସ୍ୱୀୟ ଭାଗ୍ୟ-ଗଠନର ଉନ୍ମୁକ୍ତ ସୁଯୋଗ ପାଇପାରିବେ । ସେମାନେ ବୃହତ୍ତର ସମଷ୍ଟି ଓ ଗଣତନ୍ତ୍ର ଶାସନଜନିତ ସମସ୍ତପ୍ରକାର ସୁବିଧା ଓ ନାଗରିକ ଅଧିକାର ପାଇବେ ।

## ପ୍ରଦେଶ ସଙ୍ଗେ ମିଶ୍ରଣ ବିପଦ୍‌ଜନକ :—

ଛୋଟ ଷ୍ଟେଟ ଗୁଡ଼ିକୁ କୌଣସି ପ୍ରଦେଶ ସଙ୍ଗେ ମିଶାଇ ଦେବାର ପ୍ରସ୍ତାବ ଷ୍ଟେଟବାସୀଙ୍କ ପକ୍ଷରେ ଭାରି ବିପଜ୍ଜନକ । କାରଣ ନିଜର ଅନୁନ୍ନତ ଅବସ୍ଥା ଯୋଗୁଁ ଏହା ସ୍ୱାଭାବିକ ଯେ ସେମାନଙ୍କୁ ଶୋଷଣ-ନୀତିର ବିଷମୟ ଫଳ ଭୋଗିବାକୁ ପଡ଼ିବ । ପ୍ରାଦେଶିକ ଶାସନ ବ୍ୟାପାରରେ ସେମାନଙ୍କର ବିଶେଷ କୌଣସି କର୍ତ୍ତୃତ୍ୱ ରହିବ ନାହିଁ ଏବଂ ଉଚ୍ଚସ୍ତରଗତ ସମସ୍ତପ୍ରକାର କାର୍ଯ୍ୟକଳାପରେ ସଂଖ୍ୟାଧିକ ଓ ଅପେକ୍ଷାକୃତ ଅଧିକ ରାଜନୈତିକ ଜାଗୃତି ପାଇଥିବା ପ୍ରଦେଶବାସୀମାନଙ୍କ ଆଧିପତ୍ୟ ରହୁଥିବାରୁ ଷ୍ଟେଟବାସିଗଣଙ୍କ ସ୍ଥାନୀୟ ଦେଶପ୍ରୀତି ସ୍ୱଚ୍ଛନ୍ଦ ବିକାଶର ସୁଯୋଗ ପାଇ ପାରିବ ନାହିଁ । ଯେ କୌଣସି ମିଶ୍ରଣ-ଯୋଜନା କାର୍ଯ୍ୟକାରୀ ହେଲେ ଷ୍ଟେଟଗୁଡ଼ିକ ନିଜ ନିଜ ସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତିତ୍ୱ ହରାଇବେ । ଷ୍ଟେଟବାସିଗଣଙ୍କ ପାରମ୍ପରିକତା ଓ ଦୃଷ୍ଟିଭଙ୍ଗୀ ଭିନ୍ନ ଥିବାରୁ ପ୍ରଦେଶ ସଂଗରେ ମିଶିବା ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ସ୍ୱୀୟ ରାଷ୍ଟ୍ରସଂଘରେ ଷ୍ଟେଟବାସିଗଣଙ୍କ ଆର୍ଥିକ ଓ ଅର୍ଥନୈତିକ ଅବସ୍ଥା ଯେପରି ସ୍ୱଚ୍ଛଳ ରହିବ, ସମ୍ମିଶ୍ରଣରେ ସେପରି ହୋଇ ପାରିବନାହିଁ । ରାଷ୍ଟ୍ରସଂଘ ଲୋକମାନଙ୍କୁ ଯେଉଁ ସୁବିଧା ଓ ସୁଯୋଗ ଦେବ, କୌଣସି ପ୍ରଦେଶ ତାହା ଦେଇ ପାରିବ ନାହିଁ । ଗଣତନ୍ତ୍ର ଶାସନଜନିତ ସୁବିଧା, ଶାସନ ତନ୍ତ୍ରରେ ଜନସାଧାରଣଙ୍କ ସହଯୋଗ ଓ ନାଗରିକ ଅଧିକାର ଏ ଗୁଡ଼ିକ ରାଷ୍ଟ୍ରସଂଘ ଅପେକ୍ଷା ପ୍ରଦେଶରେ ବେଶୀ ନାହିଁ । ପ୍ରଦେଶ ସଙ୍ଗେ ମିଶିଲେ ରାଜନୈତିକ ଦଳାଦଳିର କବଳରେ ପଡ଼ି ତାର ବିଷମୟ ଫଳ ଭୋଗିବାକୁ ପଡ଼ିବ । ଷ୍ଟେଟବାସୀଙ୍କର ବିପଦର ସୀମା ରହିବ ନାହିଁ । ସେମାନେ ଅଧିକ ସୁବିଧା ପାଇବେ ନାହିଁ ଅଥଚ ନାନାପ୍ରକାର ଅଜ୍ଞାତ ଅସୁବିଧା ଭୋଗିବେ । ଆଉ ମଧ୍ୟ ଷ୍ଟେଟମାନଙ୍କର ସାଧାରଣ ଦୃଷ୍ଟିକୋଣ ଓ ପାରମ୍ପରିକତା ପ୍ରଦେଶରୁ ସମ୍ପୂର୍ଣ୍ଣ ଭିନ୍ନ । ତେଣୁ ଷ୍ଟେଟଗୁଡ଼ିକ ନିଜର ରାଷ୍ଟ୍ରସଂଘ ଗଢ଼ିବା ପରିବର୍ତ୍ତେ ପ୍ରଦେଶ ସଂଗେ ମିଶିବାର କୌଣସି କାରଣ ନାହିଁ ।

## କୃଷ୍ଟିର ସମାନତା ମିଶ୍ରଣର ପ୍ରକୃଷ୍ଟ କାରଣ ନୁହେଁ :—

ସମକୃଷ୍ଟିଗତ ଓ ଏକଭାଷାଭାଷୀ ଲୋକମାନଙ୍କୁ ଏକ ଶାସନାଧୀନ ରଖିବା ସପକ୍ଷରେ ଦିଆ ଯାଉଥିବା ଯୁକ୍ତି ଅମୂଳକ । ଯଦିବ ଗୋଟିଏ ଦେଶ ଓ ତାହାର କୃଷ୍ଟି ଓ ଭାଷା ମଧ୍ୟ ଏକ; କିନ୍ତୁ ତଥାପି ତାହା ଅନେକ ସ୍ୱତନ୍ତ୍ର ଓ ସ୍ୱାଧୀନ ରାଜ୍ୟରେ ବିଭକ୍ତ ହେବାରେ କୌଣସି ପ୍ରତିବନ୍ଧକ ନାହିଁ କିମ୍ବା କୃଷ୍ଟିମୂଳକ ସମସ୍ତ ପ୍ରକାର କାର୍ଯ୍ୟରେ ପରସ୍ପର ମଧ୍ୟରେ ସହଯୋଗ ପଥରେ କୌଣସି ବାଧା ଅସିନାହିଁ । କାନାଡ଼ା ଓ ଆମେରିକାର ଯୁକ୍ତରାଷ୍ଟ୍ର ଇଂରାଜୀ ଭାଷାଭାଷୀ, ତାହା ବୋଲି ଯେ ଉଭୟ ରାଜ୍ୟ ଏକ ଶାସନାଧୀନ ହେବେ, ତାହାର କୌଣସି କାରଣ ନାହିଁ । ସେହିପରି ଭାରତରେ ଅନେକ ପ୍ରଦେଶ ହିନ୍ଦୀଭାଷୀ; ଏହି କାରଣରୁ ସମସ୍ତ ହିନ୍ଦୀଭାଷୀ ଅଞ୍ଚଳକୁ ନେଇ ଯଦି ଗୋଟିଏ ପ୍ରଦେଶ ଗଢ଼ାଯାଏ, ତେବେ ତାହା ନିତାନ୍ତ ଅସମ୍ଭାଳ ହୋଇ ଉଠିବ ଓ ଅନେକ ଅସୁବିଧା ସୃଷ୍ଟି କରିବ । କୃଷ୍ଟିମୂଳକ ଏକତା-ସମ୍ପନ୍ନ ଲୋକମାନଙ୍କୁ ସଂଖ୍ୟା-ଲଘିଷ୍ଠ ଦଳରୂପେ ବିଭିନ୍ନ ପ୍ରଦେଶରେ ରଖିବାର ଆପତ୍ତି ଯୁକ୍ତିଯୁକ୍ତ ହୋଇପାରେ, କିନ୍ତୁ ବିଭିନ୍ନ ଶାସନ ସଂହତିର ଅଂଶରୂପେ ଅବିଚ୍ଛିନ୍ନ ଅଞ୍ଚଳମାନଙ୍କରେ ସମକୃଷ୍ଟିଯୁକ୍ତ ଖଣ୍ଡମାନଙ୍କର ଅବସ୍ଥିତି ମଧ୍ୟ ଅଦ୍ଭୁତ ନୁହେଁ ।

## ପ୍ରାକୃତିକ ବିଭାଗ ଦୁଇଟି ପୃଥକ୍ ଓଡ଼ିଆ ଅଞ୍ଚଳର ଅବସ୍ଥିତିର ଅନୁକୂଳ :—

ମାଳଭୂମି ଓ ଉପକୂଳବର୍ତ୍ତୀ ସମତଳ ପ୍ରଦେଶ—ଓଡ଼ିଶାର ଏହି ପ୍ରାକୃତିକ ବିଭାଗ ଦୁଇଟି ଦୁଇଟା ପୃଥକ୍ ଓଡ଼ିଆ ଅଞ୍ଚଳ ଗଠନର ଅନୁକୂଳ । ଯେଉଁ ଉପକୂଳବର୍ତ୍ତୀ ସମତଳ ପ୍ରଦେଶରେ ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟ ବିସ୍ତୃତି ଲାଭ କରିଥିଲା ତାହା ଗୋଟିଏ ଅବିଚ୍ଛିନ୍ନ ଅଞ୍ଚଳ । ମାଳ ଅଞ୍ଚଳଠାରୁ ତାହାର ପାରମ୍ପରିକତା ଓ ସାଧାରଣ ଦୃଷ୍ଟିକୋଣ ପୃଥକ୍; ଏବଂ କୃଷ୍ଟି ଓ ଭାଷାରେ ମଧ୍ୟ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ତେଣୁ ପ୍ରୋକ୍ତ ସମତଳ ଅଞ୍ଚଳ ଗୁଡ଼ିକୁ ଏକତ୍ର କରି ଗୋଟିଏ ଶାସନ ସଂହତି ଗଢ଼ିବା ସୁବିଧାଜନକ ହେବ । ମାଳ ଅଞ୍ଚଳ ତାହାର ପୃଥକ୍ ପାରମ୍ପରିକତା, ସାଧାରଣ,

ଦୃଷ୍ଟିରୁ, ସଂସ୍କୃତି ଓ ଭାଷା ନେଇ ଅନ୍ୟ ଗୋଟାଏ ଅବିଚ୍ଛିନ୍ନ ଅଞ୍ଚଳ । ତେଣୁ ଏହି ଅଞ୍ଚଳର ରାଜ୍ୟଗୁଡ଼ିକୁ ନେଇ ଅନ୍ୟ ଗୋଟାଏ ଶାସନ ସଂହତି ଗଢ଼ିବା ସମୀଚୀନ । ଏହି ବିଭାଗଦ୍ୱୟର ବିକାଶଧାରା ଭିନ୍ନଦିଗଭିମୁଖୀ; ଏବଂ ପ୍ରକୃତି ଓ ଐତିହ୍ୟ ଉଭୟକୁ ସ୍ୱତନ୍ତ୍ର ରଖିଥିବାରୁ ଉଭୟର ମଙ୍ଗଳବିଧାନ ପାଇଁ ଏହା ବାଞ୍ଛନୀୟ ଯେ ପ୍ରତ୍ୟେକଟି ସ୍ୱତନ୍ତ୍ର ଗୋଟାଏ ଶାସନ ସଂହତିରେ ପରିଣତ ହୋଇ ବିବର୍ତ୍ତନ ପଥରେ ଅଗ୍ରସର ହେବ ଓ ନିଜେ ନିଜର ଭାଗ୍ୟ ନିୟନ୍ତ୍ରଣ କରିବ । କିନ୍ତୁ ତା ହେଲେ ମଧ୍ୟ ପ୍ରତ୍ୟେକେ ଅପର ପ୍ରତି ଭ୍ରାତୃଭାବ ପୋଷଣ କରି କୃଷ୍ଟିମୂଳକ ଓ ଅର୍ଥନୀତି ସଂକ୍ରାନ୍ତ ସମସ୍ତ ବ୍ୟାପାରରେ ପରସ୍ପର ସଙ୍ଗେ ସହଯୋଗ କରିବାରେ କୌଣସି ବାଧା ରହିବ ନାହିଁ । ତଜ୍ଜନ୍ୟ ସଂହତି ନିଜ ନିଜ ସ୍ୱାର୍ଥ ଦୃଷ୍ଟିରୁ ସ୍ୱୀୟ ଆଭ୍ୟନ୍ତରୀଣ ସମସ୍ୟା-ବଳୀର ସମାଧାନ ନିଜ ଇଚ୍ଛାନୁସାରେ ଯେ କରିବ ଏହା କହିବା ବାହୁଲ୍ୟ-ମାତ୍ର ।

## ପୂର୍ବ ଗଡ଼ଜାତ ରାଷ୍ଟ୍ରସଂଘ ମାଳ ଅଞ୍ଚଳସ୍ଥ ଓଡ଼ିଆ ଭୂଖଣ୍ଡ ଗୁଡ଼ିକୁ ଏକତ୍ର କରିବ :—

ଗୋଟିଏ ବୃହତ୍ ଓଡ଼ିଆ ଅଞ୍ଚଳ ଓ ବହୁସଂଖ୍ୟକ ଓଡ଼ିଆଭାଷୀ ଲୋକଙ୍କୁ ଏକାଠି କରି ଏକ ଶାସନାଧୀନ କରୁଥିବାରୁ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ଓଡ଼ିଆ ଜାତିର ମଙ୍ଗଳବିଧାନ କରିବ । ଓଡ଼ିଆ ଜାତୀୟ ଗୋଟାଏ ବୃହତ୍ ଗୋଷ୍ଠୀର ଆର୍ଥିକ, ନୈତିକ ଓ କୃଷ୍ଟିମୂଳକ ଉନ୍ନତି ବିଧାନ କରିବା ସଙ୍ଗେ ସଙ୍ଗେ ତାହାର ପାରମ୍ପରିକତା ଓ ସ୍ଥାନୀୟ ସ୍ୱାତନ୍ତ୍ର୍ୟ ବଜାୟ ରଖିବ ଏବଂ ଶୋଷଣନୀତିଜନିତ ଓ ପରାଧୀନତାପ୍ରସୂତ ବିପଦରୁ ରକ୍ଷା କରିବ । ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ବିଧିବଦ୍ଧ-ଶାସନ-ସଂକ୍ରାନ୍ତ କୌଣସି ପ୍ରଶ୍ନ ଉଠିବ ନାହିଁ ଅଥଚ ତାହା ଶାସକ ଓ ଶାସିତ-ଗଣଙ୍କ ସନ୍ତୋଷ ବିଧାନ କରିବ, ତେଣୁ ସମଗ୍ର ଓଡ଼ିଆ ଜାତିର ସର୍ବୋତ୍କୃଷ୍ଟ ଜାତୀୟ ସ୍ୱାର୍ଥଦୃଷ୍ଟିରୁ ଓଡ଼ିଶା ଏହି ପ୍ରସ୍ତାବକୁ ସାଦରେ ଅନୁମୋଦନ କରିବା ବାଞ୍ଛନୀୟ ।

## ସମ୍ବଲପୁର ଅଞ୍ଚଳର ସ୍ୱାର୍ଥ ପୂର୍ବଗଡ଼ଜାତର ରାଷ୍ଟ୍ରସଂଘ ସହ ଜଡ଼ିତ :—

ଐତିହ୍ୟ, ପାରମ୍ପରିକତା, ଭୌଗୋଳିକ ସାମୀପ୍ୟ, ସାମାଜିକ ସମ୍ପର୍କ

ଏହି ସବୁ କାରଣରୁ ସମ୍ବଲପୁର ଅଞ୍ଚଳର ସ୍ୱାର୍ଥ-ସମଷ୍ଟି ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ସହିତ ଘନିଷ୍ଠ ଭାବରେ ଜଡ଼ିତ । ଯଦି ସମ୍ବଲପୁର ଓ ତଦୁପକଣ୍ଠବର୍ତ୍ତୀ ମଧ୍ୟପ୍ରଦେଶାନ୍ତର୍ଗତ ଓଡ଼ିଆ ଜମିଦାରୀ ଗୁଡ଼ିକ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘରେ ଯୋଗ ଦିଅନ୍ତି, ତେବେ ତାହା ସଂପର୍କୀୟ ଜନସାଧାରଣଙ୍କୁ ଅର୍ଥନୀତିଗତ ସମସ୍ତ ପ୍ରକାର ସୁବିଧା ପ୍ରଦାନ କରିବ ଏବଂ ଶାସନ ଦୃଷ୍ଟିରୁ ସମ୍ବଲପୁର ଜିଲ୍ଲାର ଖୁବ୍ ସୁବିଧାଜନକ ହେବ ଯଦି ଏହି ଅଞ୍ଚଳର ଅଧିବାସିଗଣ ରାଷ୍ଟ୍ରସଂଘରେ ଯୋଗ ଦେବାର ନିଷ୍ପତ୍ତି କରନ୍ତି, ତେବେ ତହିଁରେ ଓଡ଼ିଶା ପ୍ରଦେଶର ଆପତ୍ତି କରିବା ଅବିଧେୟ ଏବଂ ଲୋକମାନଙ୍କ ପ୍ରୋକ୍ତ ନିଷ୍ପତ୍ତି ପଥରେ କୌଣସି ପ୍ରକାର ପ୍ରତିବନ୍ଧକ ଆନୟନ କରିବା ମଧ୍ୟ ଅନୁଚିତ; କାରଣ ରାଷ୍ଟ୍ରସଂଘରେ ଯୋଗ ଦେବା ଦ୍ୱାରା ସେମାନେ ସ୍ୱୀୟ ସ୍ୱାର୍ଥ ଘନିଷ୍ଠ ଭାବରେ ଜଡ଼ିତ ଥିବା ଗୋଟିଏ ଓଡ଼ିଆ ଅଞ୍ଚଳ ସଂଗେ ମିଶିବେ ଓ ଅପେକ୍ଷାକୃତ ଅଧିକ ଅର୍ଥନୀତିକ ସୁବିଧା ପାଇ ପାରିବେ । ତେଣୁ ସମଗ୍ର ଓଡ଼ିଆ ଜାତିର ବୃହତ୍ ସ୍ୱାର୍ଥ ଦୃଷ୍ଟିରୁ ତାହା ସାଦରେ ଗ୍ରହଣ କରିବା ଉଚିତ ।

## ଉଭୟ ବିଭାଗର ସମୃଦ୍ଧି :—

ଓଡ଼ିଶାର ମାଳ ଅଞ୍ଚଳ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘରେ ମିଶିଲେ, ବିବର୍ତ୍ତନର ସ୍ୱାଭାବିକ ଧାରାନୁସାରେ ହୋଇଥିବାରୁ ତାହା ଗୋଟିଏ ପ୍ରାକୃତିକ ଓ ସର୍ବାଙ୍ଗ-ସୁନ୍ଦର ସମ୍ମିଳନରେ ପରିଣତ ହେବ ଏବଂ ତାହା ଓଡ଼ିଆ ଦେଶର ଗୋଟିଏ ବୃହତ୍ ଖଣ୍ଡର ସମୃଦ୍ଧିର କାରଣ ହେବ । ସେହିପରି ଉପକୂଳବର୍ତ୍ତୀ ସମତଳ ଅଞ୍ଚଳ ଗୁଡ଼ିକର ସମ୍ମିଶ୍ରଣ ମଧ୍ୟ ସ୍ୱାଭାବିକ ଓ ସର୍ବାଙ୍ଗ ସୁନ୍ଦର ହୋଇ ଅପର ଓଡ଼ିଆ ବିଭାଗର ସମୃଦ୍ଧି ବିଧାନ କରିବ । ଓଡ଼ିଶାର କ୍ଷୁଦ୍ରାୟତନ ତାହାର ଦାରିଦ୍ର୍ୟର କାରଣ ବୋଲି ଯେଉଁ ଯୁକ୍ତି ଦିଆଯାଏ ତାହା ନିରର୍ଥକ । ଠିକ୍ କହିବାକୁ ଗଲେ ଓଡ଼ିଶାବାସୀ ଅଦ୍ୟାପି କୌଣସି ସୁଚିନ୍ତିତ ପରିକଳ୍ପନା ତିଆରିର ଆନ୍ତରିକ ପ୍ରୟାସ କରିନାହାନ୍ତି; ଏବଂ ଓଡ଼ିଶାର ଜାତୀୟ ସଂପଦ୍ ବୃଦ୍ଧି ଦିଗରେ ମଧ୍ୟ କୌଣସି ଆନ୍ତରିକ ଚେଷ୍ଟା ନାହିଁ । ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟ କେଡ଼େ ସମୃଦ୍ଧିଶାଳୀ ଥିଲା ତାହା ସମସ୍ତେ ଭଲଭାବରେ ଜାଣନ୍ତି । ଓଡ଼ିଶାର ଯୁଦ୍ଧୋତ୍ତର ଯୋଜନାରୁ ସ୍ପଷ୍ଟ ଜଣାପଡ଼େ ଯେ ଓଡ଼ିଆର ଖୁବ୍ ପ୍ରାକୃତିକ ସଂପଦ୍ ଅଛି ଏବଂ ତାହାର ଉନ୍ନତିର କ୍ଷେତ୍ର ମଧ୍ୟ ପ୍ରଶସ୍ତ । ଓଡ଼ିଶାରେ ଜଳ-ବୈଦ୍ୟୁତ୍ ସୁବିଧା ବିଦ୍ୟମାନ ଅଛି, ଏବଂ

ତାହା ଗୋଟିଏ ଉପକୂଳବର୍ତ୍ତୀ ଅଞ୍ଚଳ ହୋଇଥିବାରୁ ତହିଁରେ ବନ୍ଦର ଓ ଜାହାଜ ଗଠନ, ନୌବାଣିଜ୍ୟ ଏବଂ ନଦୀମୁହାଣଗତ ଓ ସାମୁଦ୍ରିକ ମାଛ ବ୍ୟବସାୟାଦିର ବିକାଶର ପ୍ରଶସ୍ତ କ୍ଷେତ୍ର ମଧ୍ୟ ଅଛି । ଉପକୂଳବର୍ତ୍ତୀ ସମତଳ ଭୂମି ଖୁବ୍ ଉର୍ବର ଏବଂ ମହାନଦୀ ଉପତ୍ୟକା ଯୋଜନା ଦ୍ୱାରା ବନ୍ୟା-ବିପତ୍ତି ଦୂର କରି ପାରିଲେ ଏବଂ ଯେଉଁ ଜଳ ଧ୍ୱଂସର କାରଣ ହେଉଛି ତାହା କେନାଲ ଦ୍ୱାରା ନିୟନ୍ତ୍ରିତ କରି ପାରିଲେ ଓଡ଼ିଶା ପ୍ରଦେଶର ଅସୀମ ଉନ୍ନତି ସାଧିତ ହେବ । ଯଦି କାଥିଆବାଡ଼ ପରି ଗୋଟିଏ ଛୋଟ ଦେଶ ନୌବାଣିଜ୍ୟରୁ ଏକ ଦୁଇ କୋଟି ମଧ୍ୟରେ ଆୟ କରିପାରେ ଓଡ଼ିଶା ଯେ କାହିଁକି ତାର ସୁବିସ୍ତୀର୍ଣ୍ଣ ଉପକୂଳରେ ଏକାଧିକ ବନ୍ଦର ନିର୍ମାଣ କରି ତଦପେକ୍ଷା ଅଧିକ ଆୟ କରି ପାରିବ ନାହିଁ, ତାହାର କୌଣସି କାରଣ ନାହିଁ ।

ଆଜି ମଧ୍ୟ ଶିଳ୍ପୋନ୍ନତିର ପ୍ରଶସ୍ତ କ୍ଷେତ୍ର ଓ ସମ୍ଭାବନା ଥିବାରୁ ସେ ଦିଗରେ ଆନ୍ତରିକ ଚେଷ୍ଟା କରାଗଲେ ଓଡ଼ିଶାର ଜାତୀୟ ଆୟ ଖୁବ୍ ବଢିବ ଓ ଲୋକମାନେ ଖୁବ୍ ସମୃଦ୍ଧିଶାଳୀ ହେବେ । ମନପ୍ରାଣ ଦେଇ କାର୍ଯ୍ୟାରମ୍ଭ କଲେ ଏହି ସମ୍ଭାବନା ଗୁଡ଼ିକୁ ଯେ ବାସ୍ତବ ଆକାର ଦିଆଯାଇ ପାରିବ ତାହା ଓଡ଼ିଶାର ଯୁଦ୍ଧୋତ୍ତର ପରିକଳ୍ପନାରେ ପ୍ରମାଣିତ ହୋଇ ସାରିଛି । ଦାରିଦ୍ର୍ୟର ଦୁର୍ଗତି ତେଣୁ ବାସ୍ତବ ନୁହେଁ । କେବଳ ସୁଚିନ୍ତିତ ପରିକଳ୍ପନା ଓ ଦୃଢତାର ସହିତ ସୃଜନଶୀଳ ଓ ଗଠନମୂଳକ ଉଦ୍ୟମ କଲେ ହେଲା । ଚେଷ୍ଟା କଲେ ଓଡ଼ିଶାର ସମତଳ ପ୍ରଦେଶ ଗୋଟାଏ ଦୃଢ ଓ ସମୃଦ୍ଧିଶାଳୀ ସଂସ୍ଥାରେ ପରିଣତ ହୋଇ ପାରିବ ଏଥିରେ କୌଣସି ସନ୍ଦେହ ନାହିଁ । ବର୍ତ୍ତମାନ ମାନ୍ଦ୍ରାଜ ଓ ବଙ୍ଗ ପ୍ରଦେଶରେ ଥିବା କେତେଗୁଡ଼ିଏ ଓଡ଼ିଆ ଅଞ୍ଚଳ ଓଡ଼ିଶାରେ ମିଶିବାର ସମ୍ଭାବନା ମଧ୍ୟ ଅଛି । ଓଡ଼ିଶା ଅପେକ୍ଷା ଖୁବ୍ ଛୋଟ ଅନେକ ସ୍ୱତନ୍ତ୍ର ଷ୍ଟେଟ ପୃଥକ୍ ଭାବରେ କେନ୍ଦ୍ର ଶାସନରେ ଯୋଗ ଦେଉଥିବାରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଉପକୂଳବର୍ତ୍ତୀ ସମତଳ ଅଞ୍ଚଳ ଦ୍ୱାରା ଗଠିତ ଓଡ଼ିଶା ପ୍ରଦେଶ ସମଗ୍ର ଭାରତର କେନ୍ଦ୍ରଶାସନାନ୍ତର୍ଗତ ଅନେକ ସଂସ୍ଥା ଅପେକ୍ଷା ଉତ୍କୃଷ୍ଟ ଓ ବୃହତ୍ତର ଆତ୍ମନିର୍ଭରଶୀଳ ହେବ । ଯଦି ପ୍ରଦେଶ ଗୁଡ଼ିକ ପୁନର୍ଗଠିତ ହୁଏ ଓ ମହାରାଷ୍ଟ୍ର, କର୍ଣ୍ଣାଟକ, କେରଳ ଏବଂ ଆନ୍ଧ୍ର ପ୍ରତ୍ୟେକେ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହୁଅନ୍ତି, ତାହାହେଲେ କଳିଙ୍ଗ କିମ୍ବା ଓଡ଼ିଶା, ସ୍ୱୀୟ ପ୍ରାକୃତିକ ସଂପଦର ପୂର୍ଣ୍ଣ ବ୍ୟବହାର କରିପାରିଲେ, ସେମାନଙ୍କ ଅପେକ୍ଷା କୌଣସି ଗୁଣରେ କ୍ଷୁଦ୍ରତର ଅଥବା ହୀନତର ହେବ ନାହିଁ ।

## ସିଦ୍ଧାନ୍ତ :—

ପୂର୍ବଗଡଜାତ ରାଷ୍ଟ୍ରସଂଘର ଗଠନ ଐତିହାସିକ [illegible] ଧାରାନୁବର୍ତ୍ତୀ । ଏହାର ଅର୍ଥନୀତିକ ଭିତ୍ତି ସୁଦୃଢ଼; ଏବଂ ଦେଶ [illegible] ଦୃଷ୍ଟିରୁ ମଧ୍ୟ ମଙ୍ଗଳଜନକ । ପୂର୍ବଗଡଜାତ ରାଷ୍ଟ୍ରସଂଘରେ ସମ୍ବଲପୁର ଅଞ୍ଚଳ ଯୋଗଦେବା ଶାସନ-ସଂକ୍ରାନ୍ତ ଓ ଅନ୍ୟାନ୍ୟ ଅନେକ କାରଣରୁ ବାଞ୍ଛନୀୟ । ତାହା ସମ୍ବଲପୁର-ଅଞ୍ଚଳବାସୀଙ୍କ ସ୍ୱାର୍ଥରକ୍ଷା ଦୃଷ୍ଟିରୁ ସର୍ବଥା ଶ୍ରେୟସ୍କର । ଐତିହାସିକ କାରଣରୁ ଓ ଶାସନ ସଂକ୍ରାନ୍ତ ସୁବିଧା ଦୃଷ୍ଟିରୁ କନ୍ଧମାଳ ଅଞ୍ଚଳ ଓ କୋଲ୍‌ହାନ ଅଞ୍ଚଳସ୍ଥ ଗ୍ରାମଗୁଡ଼ିକ ପୂର୍ବଗଡ଼ଜାତ ରାଷ୍ଟ୍ରସଂଘରେ ଯୋଗ ଦେଉଥିବା ନିଜ ନିଜ ସଂପର୍କୀୟ ଷ୍ଟେଟ ସାମିଲ ହେବା ବିଷୟ ଗୁରୁତର-ବିଚାର-ସାପେକ୍ଷ । କେବଳ ଉପକୂଳବର୍ତ୍ତୀ ଅଞ୍ଚଳ ଦ୍ୱାରା ଗଠିତ ଓଡ଼ିଶା ପ୍ରଦେଶ ଐତିହାସିକ ଓ ଅନ୍ୟାନ୍ୟ ଅନେକ କାରଣରୁ ଗୋଟିଏ ଶାସନ ସଂହତି ହେବା ସମୀଚୀନ । ଏହାର ଆର୍ଥନୀତିକ ଭିତ୍ତି ସୁଦୃଢ଼ ଏବଂ ଏହା ଜନସାଧାରଣଙ୍କ କଲ୍ୟାଣକର । ଦୁଇଟି ଭାଇ ଯେପରି ପୃଥକ୍ ରହି ଆପଣା ଗୃହର ଆଭ୍ୟନ୍ତରୀଣ ସମସ୍ୟାଗୁଡ଼ିକ ନିଜ ଇଚ୍ଛା ଓ ସୁବିଧା ଅନୁସାରେ ସମାଧାନ କରନ୍ତି ଅଥଚ ହୃଦୟର ପ୍ରୀତ ଭ୍ରାତୃଭାବ ପୋଷଣ କରି ସାମାଜିକ, କୃଷିମୂଳକ ଓ ଆର୍ଥନୀତିକ ସମସ୍ତପ୍ରକାର ବ୍ୟାପାରରେ ଉଭୟ ପକ୍ଷର ସାଧାରଣ କଲ୍ୟାଣାର୍ଥେ ପରସ୍ପର ମଧ୍ୟରେ ସହ-ଯୋଗ ରକ୍ଷି ଜୀବନ ପଥରେ ଅଗ୍ରସର ହୁଅନ୍ତି, ସେହିପରି ଏହି ପ୍ରସ୍ତାବ ଗୁଡ଼ିକ କାର୍ଯ୍ୟରେ ପରିଣତ ହେଲେ ଓଡ଼ିଆ ଜାତିର ଦୁଇଟି ଶାଖା ପୃଥକ୍ ରହି ଅପଣା ଅପଣା ପାରିପାର୍ଶ୍ୱିକତା ଓ ପ୍ରବୃତ୍ତି ଅନୁସାରେ ସ୍ୱଚ୍ଛନ୍ଦ ଗତିରେ ବିକାଶ ଲାଭ କରିବ । ଅଧିକନ୍ତୁ ଏହି ପ୍ରସ୍ତାବ ସବୁ ସ୍ୱାଭାବିକ ବିବର୍ତ୍ତନ-ଧାରା [illegible]ପ୍ରକ ଦୃଢଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିବାରୁ ସେ ଗୁଡ଼ିକର ମୂଲ୍ୟବତ୍ତା ଖୁବ୍ ବେଶୀ, ତେଣୁ ଏହା ସୁନିଶ୍ଚିତ ଯେ କାର୍ଯ୍ୟତଃ ସେ ଗୁଡ଼ିକ ଶାନ୍ତିପୂର୍ଣ୍ଣ, ସର୍ବାଙ୍ଗସୁନ୍ଦର ଓ ସ୍ଥାୟୀ ଉନ୍ନତି ଆନୟନ କରିବ । ଯେଉଁ ଓଡ଼ିଆ ସମସ୍ୟା

ବହୁକାଳବ୍ୟାପୀ ଆନ୍ଦୋଳନ ପରେ ଅଦ୍ୟାପି ଅସମାହିତ ଭାବରେ ରହି ନାନାପ୍ରକାର ଭଗ୍ନ ମନୋଭାବର କାରଣ ହୋଇଛି, ଏହି ପ୍ରସ୍ତାବ ଗୁଡ଼ିକ ପୁଣି ଶାନ୍ତିପୂର୍ଣ୍ଣ ଓ ସ୍ୱାଭାବିକ ଉପାୟରେ ତାହାର ସମାଧାନ କରିବ; ଏବଂ ତା'ରି ଫଳରେ ଓଡ଼ିଆ ଜାତି ପରସ୍ପର ମଧ୍ୟରେ ଶାନ୍ତି, ସୌହାର୍ଦ୍ଦ୍ୟ ଓ ସହଯୋଗରେ ଜୀବନ ପଥରେ ଅଗ୍ରସର ହେବେ ଏବଂ ଭାଇ ଭାଇ ମଧ୍ୟରେ ସଂକୀର୍ଣ୍ଣ ସ୍ୱାର୍ଥପରତା ମୂଳକ ଶୋଷଣନୀତି-ପ୍ରଣୋଦିତ କାର୍ଯ୍ୟ ତତ୍ପରତାର ସମ୍ଭାବନା ରହିବ ନାହିଁ । ଏହା ପ୍ରତ୍ୟେକ ସ୍ୱଦେଶପ୍ରେମୀ ଓଡ଼ିଆ ବିଶେଷ-କରି ଗଡ଼ଜାତ ଓ ସମ୍ବଲପୁର ଅଞ୍ଚଳବାସୀଙ୍କ ଗଭୀର ଚିନ୍ତା ଆବଶ୍ୟକ କରେ ।

—( ସମାପ୍ତ )—

Printed at the Kalamandal printing press, Balangir.

# ପରିଶିଷ୍ଟ

## ପୂର୍ବଗଡ଼ଜାତ ମଣ୍ଡଳ

| | | ଆୟତନ | | | ଲୋକସଂଖ୍ୟା |
|---|---|---|---|---|---|
| ଛତିଶଗଡ଼ ଗଡ଼ଜାତ | — | ୩୭,୬୮୮ | ବର୍ଗମାଇଲ | — | ୪୦,୫୦,୦୦୦ |
| ଓଡ଼ିଶା ଗଡ଼ଜାତ | — — | ୧୮,୧୫୧ | ” | — | ୩୦,୨୩,୨୩୧ |
| ବଙ୍ଗଳା ଗଡ଼ଜାତ | — | ୪,୦୩୪ | ” | — | ୯,୯୦,୯୭୭ |
| | ମୋଟ | ୫୯,୮୭୩ | ” | | ୮୦,୬୪,୨୦୮ |

## ପୂର୍ବଗଡ଼ଜାତ ଅନ୍ତର୍ଭୁକ୍ତ ଓଡ଼ିଆ ଅଞ୍ଚଳ

| | | ଆୟତନ | | | ଲୋକସଂଖ୍ୟା |
|---|---|---|---|---|---|
| ଛତିଶଗଡ଼ ଗଡ଼ଜାତ :— | | | | | |
| ବସ୍ତର | ... | ୧୩,୭୦୧ | ବର୍ଗମାଇଲ | ... | ୬,୩୩,୮୮୮ |
| କଳାହାଣ୍ଡି | ... | ୩,୫୫୯ | ” | ... | ୫,୯୭,୯୪୦ |
| ପାଟଣା | | ୨,୫୩୦ | ” | ... | ୬,୩୨,୨୨୦ |
| ରାୟଗଡ଼ | ... | ୧,୪୪୪ | ” | ... | ୩,୧୨,୬୪୩ |
| ଶକ୍ତି | ... | ୧୩୭ | ” | ... | ୫୪,୫୧୭ |
| ସାରଙ୍ଗଗଡ଼ | ... | ୫୪୧ | ” | ... | ୧,୪୦,୭୮୫ |
| | | ୨୧,୯୧୨ | ” | ... | ୨୩,୭୧,୯୯୩ |
| ଓଡ଼ିଶାଗଡ଼ଜାତ | ... | ୧୮,୧୫୧ | ” | ... | ୩୦,୨୩,୨୩୧ |
| ବଙ୍ଗଳା ଗଡ଼ଜାତ :— | | | | | |
| ମୟୂରଭଞ୍ଜ | ... | ୪,୦୩୪ | ” | ... | ୯,୯୦,୯୭୭ |
| | ମୋଟ | ୪୪,୦୯୭ | ” | ... | ୬୩,୮୬,୨୦୧ |

## ପୂର୍ବଗଡ଼ଜାତ ଅନ୍ତର୍ଭୁକ୍ତ କୋଶଳ ଅଞ୍ଚଳ

| | | ଆୟତନ | | | ଲୋକସଂଖ୍ୟା |
|---|---|---|---|---|---|
| ଛତିଶଗଡ଼ ଗଡ଼ଜାତ | | ୨୧,୯୧୨ | ବର୍ଗମାଇଲ | ... | ୨୩,୭୧,୯୯୩ |
| ଓଡ଼ିଶା ଗଡଜାତ :— | | | | | |
| ଆଠମଲ୍ଲିକ | ... | ୭୨୩ | ” | ... | ୭୨,୭୬୫ |
| ବଉଦ | ... | ୧,୧୫୭ | ” | ... | ୧,୪୬,୧୭୫ |
| ବାମଣ୍ଡା | ... | ୧,୯୭୪ | ” | ... | ୧,୭୮,୨୨୭ |
| ରେଢାଖୋଲ | ... | ୮୫୭ | ” | ... | ୩୮,୧୮୫ |
| ସୋନପୁର | ... | ୯୪୮ | ” | ... | ୨,୪୮,୮୭୫ |
| ପଣାଲ | ... | ୧,୨୮୦ | ” | ... | ୯୨,୫୩୭ |
| ଗାଙ୍ଗପୁର | ... | ୨,୪୭୭ | ” | ... | ୩,୯୮,୧୭୧ |
| | ମୋଟ | ୩୧,୩୨୭ | ” | ... | ୩୫,୪୬,୯୭୬ |

# କୋଶଳ ଅଞ୍ଚଳ

| | | ଆୟତନ | | ...... | ଲୋକସଂଖ୍ୟା |
|---|---|---|---|---|---|
| ଷ୍ଟେଟ :— | | | | | |
| ବସ୍ତର | ... | ୧୩,୭୦୧ | ବର୍ଗମାଇଲ | ... | ୬,୩୩,୮୮୮ |
| କଳାହାଣ୍ଡି | ... | ୩,୫୪୯ | ” | ... | ୫,୯୭,୯୪୦ |
| ପାଟଣା | ... | ୨,୫୩୦ | ” | ... | ୬,୩୨,୨୨୦ |
| ରାୟଗଡ଼ | ... | ୧,୪୮୬ | ” | ... | ୩,୧୨,୬୪୩ |
| ଶକ୍ତି | ... | ୧୩୭ | ” | ... | ୫୪,୫୧୭ |
| ସାରଙ୍ଗଗଡ଼ | ... | ୫୪୧ | ” | ... | ୧,୪୦,୭୮୫ |
| ଅଠମଲ୍ଲିକ | ... | ୭୨୩ | ” | ... | ୭୨,୭୬୫ |
| ବଉଦ | ... | ୧,୧୫୬ | ” | ... | ୧,୪୬,୧୭୫ |
| ବାମଣ୍ଡା | ... | ୧,୯୭୪ | ” | ... | ୧,୭୮,୨୭୭ |
| ରେଢ଼ାଖୋଲ | ... | ୮୫୭ | ” | ... | ୩୮,୧୮୫ |
| ସୋନପୁର | ... | ୯୪୮ | ” | ... | ୨,୪୮,୮୭୩ |
| ବଣାଇ | ... | ୧,୨୮୦ | ” | ... | ୯୨,୫୩୭ |
| ଗାଙ୍ଗପୁର | ... | ୨,୪୭୭ | ” | ... | ୩,୯୮,୧୭୧ |
| | ମୋଟ | ୩୧,୩୨୭ | ” | ... | ୩୫,୪୬,୯୭୬ |
| ସମ୍ବଲପୁର ଜିଲ୍ଲା | ... | ୫,୪୧୯ | ” | ... | ୧୧,୮୨,୬୨୨ |
| | ମୋଟ | ୩୬,୭୪୬ | ” | ... | ୪୭,୨୯,୫୯୮ |
| ଫୁଲଝର | ... | ୭୯୨ | ” | (ଅନୁମାନିକ) | ୬୦,୦୦୦ |
| ବିନ୍ଦ୍ରାନ୍‌ଅଗଡ଼ | ... | ୧,୪୩୭ | ” | ” | ୧,୦୦,୦୦୦ |
| ଦେଉଁଲୀ | ... | ... | ... | ” | ୨୦,୦୦୦ |
| ଜଙ୍କମାଲ | ... | ୮୦୦ | ” | ” | ୮୬,୦୦୦ |
| | ମୋଟ | ୪୦,୦୦୦ | ” | ... | ୫୦,୦୦,୦୦୦ |

।

| ନାମ | ଏରିଆ | ଲୋକସଂଖ୍ୟା | ୧୯୪୬ ର ଆୟ ପେଡେ ଲକ୍ଷ |
|---|---|---|---|
| ବସ୍ତର | ୧୩୭୦୦ | ୬୩୩୮୮୮ | ୩୯ |
| ଚଙ୍ଗଭକର | ୮୮୯ | ୨୧୨୬୬ | ୩ |
| ଛୁଇଖଦାନ | ୧୫୩ | ୩୨୭୩୧ | ୨ |
| ଯଶପୁର | ୧୯୫୫ | ୨୨୩୬୧୨ | ୧୨ |
| କଲାହାଣ୍ଡି | ୩୫୫୯ | ୫୯୭୯୪୦ | ୧୬ |
| କାଙ୍କେର | ୧୪୧୩ | ୧୪୯୪୭୧ | ୧୪ |
| କବର୍ଦ୍ଧା | ୭୯୪ | ୭୭୨୮୫ | ୭ |
| ଖଇରାଗଡ଼ | ୯୩୧ | ୧୭୩୭୧୩ | ୨୪ |
| କୋରିୟା | ୧୬୪୭ | ୧୨୬୮୭୩ | ୨୫ |
| ନନ୍ଦଗାଁ | ୮୭୨ | ୨୦୨୯୭୩ | ୩୦ |
| ପାଟଣା | ୨୫୩୦ | ୬୩୨୨୨୦ | ୨୫ |
| ରାୟଗଢ | ୧୪୪୪ | ୩୧୨୬୪୩ | ୨୬ |
| ଶକ୍ତି | ୧୩୭ | ୫୪୫୧୭ | ୩ |
| ଶାରଙ୍ଗଗଡ଼ | ୫୪୧ | ୧୪୦୭୮୫ | ୮ |
| ସୁରୁଗୁଜା | ୬୦୬୭ | ୫୫୧୭୫୨ | ୨୩ |
| ଉଦୟପୁର | ୧୦୪୫ | ୧୧୮୩୩୧ | ୪ |
| ଆଠଗଡ଼ | ୧୬୩ | ୫୫୪୯୮ | ୩ |
| ତାଳଚେର | ୩୮୮ | ୮୬୪୩୨ | ୬ |
| ଜାଲଗିର | ୨୬୩ | ୭୩୧୦୯ | ୪ |
| କେନ୍ଦୁଝର | ୩୨୦୬ | ୫୨୯୭୮୬ | ୪୨ |
| ପାଲଲହଡ଼ା | ୪୫୦ | ୩୦୧୩୦ | ୨ |

| | | | |
|---|---|---|---|
| ଅଠମଲ୍ଲିକ | ୭୬୩ | ୭୨୭୭୫ | ୫ |
| ଢେଙ୍କାନାଳ | ୧୪୬୮ | ୩୬୪୨୧୬ | ୬୩ |
| ହିନ୍ଦୋଳ | ୨୯୧ | ୫୮୫୦୫ | ୩ |
| ନରସିଂହପୁର | ୨୦୪ | ୪୮୪୪୮ | ୬ |
| ବଡମ୍ବା | ୧୪୩ | ୫୬୯୬୪ | ୬ |
| ରେଢ଼ାଖୋଲ | ୮୫୭ | ୩୮୧୮୫ | ୩ |
| ଟିଗିରିଆ | ୪୭ | ୨୭୩୩୧ | ୧ |
| ଖଣ୍ଡପଡ଼ା | ୨୬୯ | ୮୭୩୪୧ | ୩ |
| ନୟାଗଡ଼ | ୫୭୨ | ୧୭୦୪୦୯ | ୧୪ |
| ରଣପୁର | ୨୦୪ | ୫୧୩୭୭ | ୨ |
| ଦଶପଲ୍ଲା | ୫୫୭ | ୫୩୮୩୩ | ୩ |
| ବୌଦ | ୧୧୫୭ | ୧୪୭୧୭୫ | ୭ |
| ବାମଣ୍ଡା | ୧୯୭୪ | ୧୬୮୬୭୬ | ୬୪ |
| ସୋନପୁର | ୯୪୮ | ୬୪୮୮୭୩ | ୧୪ |
| ବଣାଇ | ୧୬୮୦ | ୯୬୫୩୭ | ୫ |
| ଗାଙ୍ଗପୁର | ୬୪୭୭ | ୩୯୮୧୭୧ | ୬୭ |
| ସରାଇକଳା | ୪୪୭ | ୧୫୪୮୪୪ | ୧୪ |
| ଖରସୁଆଁ | ୧୫୭ | ୫୦୫୮୦ | ୩ |
| | | ୭୧ ୪୦୮୪୭ | ୪୭୧ |
| ସମ୍ବଲପୁର ଜିଲ୍ଲା | ୫୪୧୯ | ୧୧୮୦୭୨୨ | ୭୦ |
| ଫୁଲଝର, ବିନ୍ଦ୍ରା-ନୟାଗଡ, ଦେଓରେ ଓ ଛକମାଳ | ୩୬୦୦ | ୬୭୦୦୦୦ | ପ୍ରାୟ ୪୦୦ |



# GREATER SAMBALPUR




## A ROUGH SKETCH

1. Council and Assembly Houses.
2. Presidential Palace.
3. States Houses.
4. **Houses for Ministers, Advisers, Executive Officers, High Court Judges and various other Officers.**
5. Secretariat and Office Buildings.
6. High Court.
7. Other Courts.
8. Museum.
9. Library and Reading Room.
10. Clubs.
11. Cinemas.
12. Town Hall.
13. University Buildings.
14. Law College.
15. Medical College.
16. Engineering College.
17. Science and Art College.
18. Fine Arts College.
19. Music College.
20. Technological and Technical Institutions.
21. Training College.
22. Research Institutions.
23. Central Agricultural Farm and Institution.
24. Central Livestock Farm and Institution.
25. Laboratories.
26. Broadcasting Station.
27. Hotels.
28. Recreation Centres.
29. Parks.
30. Play-grounds.
31. Industrial, Commercial and Residential Areas, etc., etc.

ପୂର୍ବ ପୃଷ୍ଠାରେ ଦିଆଯାଇଥିବା **ବୃହତ୍ତର ସମ୍ବଲପୁର** ର ରଫ୍ ନକ୍ସାରେ ଇଂରାଜୀ ସଂଖ୍ୟା ଯାହା ନିର୍ଦ୍ଦେଶ କରୁଅଛି ତାର ଓଡ଼ିଆ ଅନୁବାଦ ନିମ୍ନରେ ଦିଆଗଲା ।

---

୧ ବ୍ୟବସ୍ଥାପକ ସଭାଗୃହ
୨ ଗଭର୍ଣ୍ଣରଙ୍କ ବାସ ଭବନ
୩ ଭିନ୍ନ ଭିନ୍ନ ଷ୍ଟେଟ୍‌ମାନଙ୍କର ପ୍ରାସାଦ
୪ ମନ୍ତ୍ରୀ ଓ ଅନ୍ୟାନ୍ୟ କର୍ମଚାରୀ-ମାନଙ୍କର ବାସ ଭବନ
୫ ସେକ୍ରେଟେରିଏଟ୍ ଓ ସରକାରୀ ଅଫିସ ଇତ୍ୟାଦି
୬ ହାଇକୋର୍ଟ
୭ ଅନ୍ୟାନ୍ୟ ଅଦାଲତ
୮ ଯାଦୁଘର
୯ ଲାଇବ୍ରେରୀ ଓ ପଠନାଳୟ
୧୦ କ୍ଲବ୍
୧୧ ସିନେମା
୧୨ ଟାଉନ୍ ହଲ
୧୩ ବିଶ୍ୱବିଦ୍ୟାଳୟ
୧୪ ଆଇନ୍ କଲେଜ୍
୧୫ ମେଡ଼ିକାଲ୍ କଲେଜ୍
୧୬ ଇଞ୍ଜିନିୟରିଂ କଲେଜ୍
୧୭ କଳା ଓ ବିଜ୍ଞାନ କଲେଜ
୧୮ ନୃତ୍ୟକଳା କଲେଜ୍
୧୯ ସଙ୍ଗୀତ କଲେଜ
୨୦ ଟେକ୍‌ନୋଲଜିକାଲ କଲେଜ ଇତ୍ୟାଦି
୨୧ ଟ୍ରେନିଂ କଲେଜ
୨୨ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍
୨୩ କେନ୍ଦ୍ର କୃଷି-ଫାର୍ମ
୨୪ କେନ୍ଦ୍ର ପଶୁଶାଳା
୨୫ ପ୍ରେକ୍ଷଣାଗାର
୨୬ ରେଡ଼ିଓ ବ୍ରଡ଼କାଷ୍ଟିଙ୍ଗ୍ ଷ୍ଟେସନ
୨୭ ହୋଟେଲ୍
୨୮ ରିକ୍ରିଏସନ୍ ସେଣ୍ଟର
୨୯ ପାର୍କ
୩୦ ଖେଳ ପଡ଼ିଆ
୩୧ ବାଣିଜ୍ୟ, ବ୍ୟବସାୟ ଓ ବସା-ବାସ ଇତ୍ୟାଦି ପାଇଁ ସ୍ଥାନ

---

